# କୋଡିଏଟି ପ୍ରେମ କବିତା
# ଏବଂ ଏକ ବିଷାଦ ଗୀତିକା

ପାବ୍ଲୋ ନେରୁଦା



ଅନୁବାଦ: ସଂଗ୍ରାମ ଜେନା



ରଚନା ଓ ସମ୍ପାଦନା ଉଭୟ କ୍ଷେତ୍ରରେ ସାମର୍ଥ୍ୟ ଅର୍ଜନ କରିଥିବା ଶ୍ରୀ ସଂଗ୍ରାମ ଜେନା ନିଜ ସୃଜନ ଓ ନାନ୍ଦନିକତା ନେଇ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ଅଟନ୍ତି । ନିଜର କିଛି ଅନନ୍ୟ କାବ୍ୟ ପ୍ରତିଭା ସହ ଜାତୀୟ, ଆର୍ନ୍ତଜାତୀୟ ସ୍ତରର କିଛି ଉଲ୍ଲେଖଯୋଗ୍ୟ ସାହିତ୍ୟ କୃତିକୁ ଅନୁବାଦ କରିବା ନେଇ ସେ  ଓଡିଆ ସାହିତ୍ୟରେ ବେଶ ଚର୍ଚ୍ଚିତ ତଥା ଲୋକପ୍ରିୟ । ଆବେଗ ଓ ବୁଦ୍ଧିମତାର ସନ୍ତୁଳନ ସହ ପ୍ରକାଶଭଙ୍ଗୀର ସରଳତା ତାଙ୍କ ସୃଜନ କଳାର ମୁଖ୍ୟ ବିଭବ ବୋଲି ସମାଲୋଚକ ମାନେ ମତ ଦେଇଥାନ୍ତି । ଦୀର୍ଘକାଳ ଧରି ପ୍ରକାଶ ପାଇ ଆସୁଥିବା ସାହିତ୍ୟ ପତ୍ରିକା ନିଶାନ୍ତର ଉତାଙ୍ଗ ସମ୍ପାଦନା ତାଙ୍କ ପରିଚୟର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ ।

ପ୍ରକାଶକ

# ପାବ୍ଲୋ ନେରୁଦା

## କୋଡ଼ିଏଟି ପ୍ରେମ କବିତା ଏବଂ ଏକ ବିଷାଦ ଗୀତିକା

ଅନୁବାଦ :

ସଂଗ୍ରାମ ଜେନା



# ପାବ୍ଲୋ ନେରୁଦା

## କୋଡ଼ିଏଟି ପ୍ରେମ କବିତା ଏବଂ ଏକ ବିଷାଦ ଗୀତିକା

ଅନୁବାଦ :
ସଂଗ୍ରାମ ଜେନା
ପ୍ରକାଶକ :
ପାଂଡୁଲିପି
ଶ୍ରୀରାମନଗର, କଟକ-୧୨
ପ୍ରଚ୍ଛଦ ଚିତ୍ର : ପ୍ରକାଶ ମହାପାତ୍ର
ଅକ୍ଷର ସଜା : ଶବ୍ଦଲିପି, କଲ୍ୟାଣୀନଗର, କଟକ
ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩

ପ୍ରଥମ ସଂସ୍କରଣ : ୨୦୦୭

ସୁଲଭ ମୂଲ୍ୟ : ଟ. ୬୦/-    ବୋର୍ଡ ବନ୍ଧେଇ : ଟ. ୭୦/-

**PABLO NERUDA**

**TWENTY LOVE POEMS**
***and A Song of Despair***

Translated by :
**Sangram Jena**

Publisher :
**Pandulipi**
Sriram Nagar, Cuttack-12

Cover design : **Prakash Mohapatra**

DTP : Sabdalipi, Kalyani Nagar, Cuttack.

Printed at Techno Arts Offset, Kalyani Nagar, Cuttack13

First Edition : **2007**

Paper Back : **Rs. 60/-**    Board Binding : **Rs. 70/-**

# ସୂଚୀ

ଭୂମିକା ୦୫

ରମଣୀର ତନୁ ୨୯
ଆଲୋକ ତୁମକୁ ଢାଂକିଦିଏ ୩୧
ଆଃ ଦେବଦାରୁର ବିସ୍ତାର ୩୩
ସକାଳଟି ପୂରିଥାଏ ୩୫
ତେଣୁ ତୁମେ ମୋ କଥା ଶୁଣିବ ୩୭
ମନେପଡ଼ ମୋର, ପୂର୍ବେ ତୁମେ ଥିଲ କେଉଁପରି ୪୦
ଅପରାହ୍ନ ଭିତରକୁ ଝୁଙ୍କିପଡ଼ି ୪୨
ଧଳା ମହୁମାଛି ୪୪
ଦେବଦାରୁପାନରେ ପ୍ରମତ୍ତ ୪୬
ଏପରିକି ହରାଇଛୁ ଆମେ ୪୮
ଆପାତତଃ ଆକାଶ ବାହାରେ ୫୦
ତମ ବୁକୁ ହିଁ ଯଥେଷ୍ଟ ୫୩
ଆଂକିଛି ମୁଁ ଅନେକ ନିଆଁର ଦାଗ ୫୫
ପ୍ରତିଦିନ ଖେଳୁଥାଅ ତୁମେ ୫୭
ମୁଁ ଚାହେଁ ହେବାକୁ ଶାନ୍ତ ତୁମ ପାଇଁ ୬୧
ମୋ' ଗୋଧୂଳି ଆକାଶରେ ୬୩
ଭାବୁଛି ଓଲଟ୍ ପାଲଟ୍ ଛାଇର କଥା ୬୫
ମୁଁ ତୁମକୁ ଭଲପାଏ ଏଠି ୬୮
ରୌଦ୍ରଦଗ୍ଧା କୋମଳ କୁମାରୀ ୭୧
ଆଜିରାତି ରଚିପାରେଁ ଧାଡ଼ିମାନ ସବୁଠୁଁ ଦୁଃଖଦ ୭୩

ଏକ ବିଷାଦ ଗୀତିକା ୭୬

# ଭୂମିକା

'କି ଘଟିଲା- ମୋ ଆତ୍ମା ଭିତରେ
ଉତେଜନା ନା ବିସ୍ମୃତ ଡେଣାମାନ,
ସେ ଅଗ୍ନିକଣିକାଙ୍କୁ
ମୋ ନିଜ ବାଗରେ ପୁଣି ପଢ଼ିବାକୁ
ମୁଁ ପ୍ରୟାସ କଲି,
ଏବଂ ଧାଡ଼ିଟିଏ
ଲେଖିଦେଲି ଅସ୍ପଷ୍ଟଭାବରେ ।'

(କବିତା)

୧୯୧୪ ମସିହାର ଶୀତଋତୁର ଏକ ଦୀର୍ଘ ବର୍ଷାଭିଜା ରାତିରେ ଏଇଟି ଥିଲା ଗୋଟିଏ ଦଶବର୍ଷ ବୟସ୍କ କିଶୋରର ପ୍ରଥମ କବିତା ।

ଦକ୍ଷିଣ ଚିଲ୍ଲୀର ଟେମୁକୋ ସହର । ସହର କମ୍ ଜଂଗଲ ବେଶୀ । ଏଇଠି ସେତେବେଳେ ରେଲ ଲାଇନ୍ ବିଛାଇବା କାମ ଚାଲୁଥାଏ । ଜଂଗଲ ସଫା ହୋଇ ଜନବସତି ମାଡ଼ି ଚାଲିଥାଏ । ଆଗକୁ ଆଗକୁ । ଏହି କାମରେ ଅନେକ ଲୋକ ନିଯୁକ୍ତ ହୋଇଥାନ୍ତି । ସହରତଳିରେ ତାଂକ ରହିବା ପାଇଁ ତିଆରି ହୋଇଥାଏ ଧାଡ଼ିଧାଡ଼ି ଘର । ଘର ଆଗରେ ପଛରେ ଫାଂକା ଜାଗା । କେବଳ ଦେଖାଯାଏ ଦୂର ପାହାଡ଼, ଘଞ୍ଚ ଜଂଗଲ ଓ କାହିଁ କେତେ ଦୂରକୁ ଲମ୍ବିଯାଇଥିବା ରେଲ୍ ଲାଇନ୍ । ରାତି ହେଲେ ସବୁ ଲୁଚିଯାଏ କୁହୁଡ଼ି ଭିତରେ । କିଛି ବାରି ହୁଏନା, ଜହ୍ନ ଆଲୁଅରେ ବି । ଯାହା କିଛି ଶୁଭୁଥାଏ ବର୍ଷା ଆଉ କିଛି କୀଟପତଂଗଂକ ସ୍ୱର । ଏଇଠି ୧୯୧୪ ମସିହାରେ ନିଜ ଆତ୍ମାର

ଆହ୍ୱାନରେ ପ୍ରଥମ କେତେଧାଡ଼ି କବିତା ଲେଖିଥିବା ଏଇ କିଶୋରଟି ଥିଲା ନେଫ୍‌ତାଲି ରିକାର୍ଡୋ ରେଇସ୍ ଯେ କି ପରବର୍ତ୍ତୀ କାଳରେ ପାବ୍ଲୋ ନେରୁଦା ନାମରେ ସାରା ବିଶ୍ୱରେ ପରିଚିତ ।

ଏହି ମହାନ ଲେଖକଙ୍କ ଜନ୍ମ ୧୯୦୪ ମସିହାରେ, ଚିଲ୍ଲୀର ପାରାଲ୍ ଠାରେ । ସୁହୃଦ ଓ ସଂପର୍କୀୟମାନଂକ ପରିହାସକୁ ଭୟ କରି ସେ ଊନବିଂଶ ଶତାବ୍ଦୀର ପ୍ରଖ୍ୟାତ ଚେକ୍ ଲେଖକ ଜାନ୍ ନେରୁଦାଂକ ନାମ ଅନୁକରଣରେ ନିଜ ନାଁ ରଖିଥିଲେ ପାବ୍ଲୋ ନେରୁଦା । ଟେମୁକୋ ସହରରେ ହିଁ ନେରୁଦାଂକ କବିଜୀବନ ଆରମ୍ଭ, କବିତାର ଜନ୍ମ । ଦକ୍ଷିଣ ଚିଲ୍ଲୀରେ ନୂଆକରି ଗଢ଼ି ଉଠୁଥିବା ଏହି ଜନବସତିରେ ସାମାଜିକ ପରଂପରା, ଧର୍ମଧାରଣା, ରାଜନୈତିକ ଆଦର୍ଶ, ବର୍ଣ୍ଣବୈଷମ୍ୟ, ସାହିତ୍ୟ, ସଂସ୍କୃତି ଆଦିର ପ୍ରଭାବ ଥିଲା ନିହାତି ନଗଣ୍ୟ । ଏଣୁ ପରିବେଶ ଥିଲା ଅଣପାରଂପରିକ, ସଂପୂର୍ଣ୍ଣ ମୁକ୍ତ ଓ ସ୍ୱାଧୀନ । ଥିଲା କେବଳ ମାଇଲ ମାଇଲ ଜଂଗଲ, ବିଓବିଓ ନଈ, ପାହାଡ଼ ଓ ଗଛରେ ରହୁଥିବା ଅସଂଖ୍ୟ କୀଟ ପତଂଗ । ପିଲାଦିନେ ସେ ଥିଲେ ପାହାଡ଼ ଜଂଗଲ ଭିତରେ ବୁଲୁଥିବା ଜଣେ ପରିବ୍ରାଜକ । କାରଣ ସମଗ୍ର ଅଂଚଳ ଓ ପରିବେଶ ଥିଲା ତାଂକ ପାଇଁ ରହସ୍ୟମୟ । ଦିନର ଜଂଗଲ ଓ ରାତିର ଫାଙ୍କା ଆକାଶ ହିଁ ଥିଲା ତାଂକ ନିର୍ଜନ ପିଲାଦିନର ସାଥୀ । ଏଣୁ ପ୍ରକୃତି, ନିର୍ଜନତା, ରହସ୍ୟ ଏସବୁ ଥିଲା ତାଂକ କବି ଜୀବନର ପୃଷ୍ଠଭୂମି ।

ପୁଣି ଟେମୁକୋ ହିଁ ଥିଲା ତାଂକ ପାଇଁ ସ୍ମୃତିର ସହରଟିଏ । ଶୈଶବରେ ସେ ଏଇଠି ତାଂକ ମା'ଙ୍କୁ ହରାଇଥିଲେ । ସାବତ ମା ଥିଲେ ସୌଭାଗ୍ୟବଶତଃ ଖୁବ୍ ସ୍ନେହୀ । ପିଲାଦିନେ ଏଇଠି ରେଲ୍ ଲାଇନ୍‌ରେ କାମ କଲାବେଳେ ଟ୍ରେନ୍‌ରୁ ପଡ଼ିଯାଇ ତାଂକ ପିତାଂକର ମୃତ୍ୟୁ ହୋଇଥିଲା । ଏଇଠି ଆରମ୍ଭ ହୋଇଥିଲା ତାଂକ ପ୍ରାଥମିକ ଶିକ୍ଷା । ଏଇ ସହରରେ ତାଂକର ସାକ୍ଷାତ୍ ହୋଇଥିଲା ଜଣେ ଶିକ୍ଷୟିତ୍ରୀଂକ ସହ । ତାଂକଠୁ ସେ ପାଇଥିଲେ କବିତା ଲେଖିବାର ପ୍ରେରଣା । ସେ ଶିକ୍ଷୟିତ୍ରୀ ଥିଲେ ଗାବ୍ରିଏଲ୍ ମିଷ୍ଟ୍ରାଲ, ଯିଏ ପରବର୍ତ୍ତୀ କାଳରେ ଜଣେ ପ୍ରଖ୍ୟାତ ଲାଟିନ୍ ଆମେରିକୀୟ କବି ଭାବେ ସାହିତ୍ୟରେ ନୋବେଲ ପୁରସ୍କାର ପାଇଥିଲେ । ୧୯୨୦ ମସିହାରେ ନେରୁଦା ଟେମୁକୋ ଛାଡ଼ି ସାଣ୍ଟିଆଗୋକୁ ଉଚ୍ଚଶିକ୍ଷା ପାଇଁ ଚାଲିଯାଇଥିଲେ ।

୧୯୧୭ ମସିହାରେ ପ୍ରଥମେ ତାଂକର କିଛି କବିତା ପ୍ରକାଶିତ ହୋଇଥିଲା, ପିଲାଂକ ପତ୍ରିକା 'କ୍ଲାରିଡାଡ୍'ରେ । ୧୯୨୧ ମସିହାରେ ସାଣ୍ଟିଆଗୋଠାରେ ପ୍ରକାଶିତ ହୋଇଥିଲା ତାଂକର ପ୍ରଥମ କବିତା ସଂକଳନ 'ସଂଗ୍ ଅଫ୍ ଦି ଫେଷ୍ଟିଭାଲ୍' । ୧୯୨୪ ମସିହାରେ ପ୍ରକାଶିତ 'ଟ୍ୱେନ୍‌ଟି ପୋଏମସ୍ ଅଫ୍ ଲଭ୍ ଆଣ୍ଡ ଏ ସଂଗ୍ ଅଫ୍ ଡେସ୍‌ପେଆର' ତାଙ୍କୁ ଜଣେ ଲାଟିନ୍ ଆମେରିକୀୟ କବି ଭାବେ ପ୍ରତିଷ୍ଠା ଆଣି ଦେଇଥିଲା । ୧୯୬୧ ମସିହାରେ ଏହି ସଂକଳନଟିର ଏକ ନିୟୁତ କପି ବିକ୍ରି ହୋଇଥିଲା । ୧୯୩୩ରୁ ୧୯୪୭ ମଧ୍ୟରେ ପ୍ରକାଶ ପାଇଥିଲା ରେସିଡେନସ୍ ସିରିଜ୍‌ର ତିନୋଟି ଭାଗ ।

୧୯୪୮ ମସିହାରେ ରାଜନୈତିକ କାରଣ ଯୋଗୁ ତାଂକୁ ଦେଶତ୍ୟାଗ କରିବାକୁ ପଡ଼ିଥିଲା । ଏହି ନିର୍ବାସନ ସମୟରେ ୧୯୫୦ ମସିହାରେ ସେ ଲେଖିଥିଲେ ବହୁ ପ୍ରଶଂସିତ କବିତା ସଂକଳନ 'କାଣ୍ଟୋଜେନେରାଲ' । ଚିଲ୍ଲୀକୁ ପ୍ରତ୍ୟାବର୍ତ୍ତନ କଲା ପରେ ସେ ଛଦ୍ମନାମରେ ଲେଖିଥିଲେ 'କ୍ୟାପ୍‌ଟେନସ୍ ଭରସେସ୍', ଯାହା ଏକ ପ୍ରସିଦ୍ଧ ପ୍ରେମକବିତା ସଂକଳନ । ୧୯୫୮ ମସିହାରେ ପ୍ରକାଶ ପାଇଥିଲା ଶହେଟି ଲଭ୍ ସନେଟ୍ । ପରବର୍ତ୍ତୀ ସମୟରେ 'ଟ୍ୱେନ୍‌ଟି ଲଭ୍ ପୋଏମସ୍' ପୃଥିବୀର ଅଧିକାଂଶ ଭାଷାରେ ଅନୂଦିତ ହୋଇ ତାଂକୁ ଜଣେ ପ୍ରମୁଖ କବି ଭାବେ ସାରା ବିଶ୍ୱରେ ପରିଚିତ କରାଇଥିଲା । ୧୯୭୧ ମସିହାରେ ତାଂକୁ ସାହିତ୍ୟର ସର୍ବୋଚ୍ଚ ସମ୍ମାନ ନୋବେଲ ପୁରସ୍କାରରେ ସମ୍ମାନିତ କରାଯାଇଥିଲା । କବି ବ୍ୟତୀତ ସେ ଥିଲେ ଜଣେ ସାମ୍ୟବାଦୀ ରାଜନୈତିକ କର୍ମୀ, ବିପ୍ଳବୀ ଓ କୂଟନୈତିଜ୍ଞ । ୧୯୭୩ ମସିହାରେ ଚିଲ୍ଲୀର ରାଜନୈତିକ ଦୃଶ୍ୟପଟ୍ଟର ପରିବର୍ତ୍ତନ ଘଟିଥିଲା । ତା'ର ଅଳ୍ପଦିନ ମଧ୍ୟରେ କବି ନେରୁଦାଂକ ମୃତ୍ୟୁ ଘଟିଥିଲା । ଏହାର କାରଣ ତାଂକ କବିତା ପରି ଏବେବି ରହସ୍ୟାବୃତ ।

ସମସାମୟିକ ଲାଟିନ୍ ଆମେରିକୀୟ କାବ୍ୟ ପରଂପରାରେ ପ୍ରେମ କବିତାର ଧାରା ଥିଲା ଖୁବ୍ ବଳିଷ୍ଠ । ଏଇ ଧାରାର କବିମାନଙ୍କ ମଧ୍ୟରେ ଭାଲେଜୋ, ମିସ୍ତ୍ରାଲ, ପାଜ୍, ନେରୁଦା ଥିଲେ ବିଶ୍ୱବିଦିତ । ଅନ୍ୟ ବହୁ ଲାଟିନ୍ ଆମେରିକୀୟ ରାଷ୍ଟ୍ର ପରି ସ୍ପେନ୍ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଚିଲ୍ଲୀରେ ମଧ୍ୟ ସ୍ପେନୀୟ ଭାଷା, ସାହିତ୍ୟ, ଧର୍ମ ଓ ପରଂପରାର ପ୍ରଭାବ

ଥିଲା ପ୍ରଚୁର । ଅବଶ୍ୟ ମଧ୍ୟ-ମେକ୍‌ସିକୀୟ ଅଂଚଳରେ ଆଦିମ ଅଧିବାସୀମାନଂକ ସଂସ୍କୃତି ଥିଲା ଅଧିକ ପ୍ରଭାବଶାଳୀ । ଏହି ଅଂଚଳରେ 'ଆଜଟେକ୍' ସଭ୍ୟତା ଓ କେନ୍ଦ୍ରୀୟ ଆମେରିକା ତଥା ଦକ୍ଷିଣ ମେକ୍‌ସିକୀୟ ଅଂଚଳରେ 'ମାୟା' ସଭ୍ୟତାର ପ୍ରଭାବ ଥିଲା ଗଭୀର । ଆମେରିକା ମହାଦେଶର ଦକ୍ଷିଣରେ ଅବସ୍ଥିତ ଚିଲ୍ଲୀ, ପ୍ରଶାନ୍ତ ମହାସାଗର ଓ ଆଣ୍ଡୀଜ୍ ପର୍ବତମାଳା ଭିତରେ ଏକ ମଧ୍ୟବର୍ତ୍ତୀ ସ୍ଥାନ । ଏଣୁ ସ୍ପେନୀୟମାନେ ମେକ୍‌ସିକେ, ପେରୁ ଭଳି ବହୁ ଅଂଚଳରେ ସାମ୍ରାଜ୍ୟ ବିସ୍ତାର କଲା ପରେ ଚିଲ୍ଲୀକୁ ଦଖଲ କରିଥିଲେ । ପୁଣି ୧୫୪୧ ମସିହାରେ ସାଣ୍ଟିଆଗୋ ସହର ପ୍ରତିଷ୍ଠା ହେବାପରେ ୧୫୯୩ ମସିହାରେ ଖ୍ରୀଷ୍ଟିୟ ଧର୍ମପ୍ରଚାରକମାନେ ମିସନ୍ ପ୍ରତିଷ୍ଠା କରିଥିଲେ । ଏଣୁ ସହରି ସଭ୍ୟତାର ବିକାଶ ଚିଲ୍ଲୀରେ ଖୁବ୍ ବିଳମ୍ବରେ ଆରମ୍ଭ ହୋଇଥିଲା । ଫଳରେ ୧୭୨୮ ମସିହା ପର୍ଯ୍ୟନ୍ତ ମେକ୍‌ସିକୋ, ଲିମା, କ୍ୱେଟୋ, ଟୋବାଗୋ, ଗୁଏତ୍‌ମାଲା, କାରାକାସ୍ ଓ ହାଭାନା ସହ ସାଣ୍ଟିଆଗୋ ସମକକ୍ଷ ହୋଇପାରିନଥିଲା ।

ଏ ସବୁ ସତ୍ତ୍ୱେ ସାହିତ୍ୟରେ ପ୍ରଥମ ଲାଟିନ୍ ଆମେରିକୀୟ ନୋବେଲ୍ ବିଜେତ୍ରୀ ଥିଲେ ଚିଲ୍ଲୀର ଗାବ୍ରିଏଲ୍ ମିଷ୍ଟ୍ରାଲ୍ । ପରବର୍ତ୍ତୀ ସମୟରେ ଲାଟିନ୍ ଆମେରିକୀୟ ସାହିତ୍ୟରେ ଯେଉଁମାନେ ନୋବେଲ୍ ପୁରସ୍କାର ପାଇଥିଲେ ସେମାନଂକ ମଧ୍ୟରେ ଥିଲେ ଗୁଏତ୍‌ମାଲାର ମିଗୁଏଲ୍ ଆଞ୍ଜେଲ ଅଷ୍ଟୁରିଅସ୍, କଲମ୍ବିଆର ଗାବ୍ରିଏଲ୍ ଗାର୍ସିଆ ମାର୍କେଜ୍, ମେକ୍‌ସିକୋର ଅକ୍ଟାଭିଓ ପାଜ୍ ଓ ଚିଲ୍ଲୀର ପାବ୍ଲୋ ନେରୁଦା । ଶହେବର୍ଷ ପୂର୍ବେ ଲାଟିନ୍ ଆମେରିକା ସ୍ପେନ୍‌ର ଉପନିବେଶରୁ ମୁକ୍ତି ଲାଭ କରିଥିଲା । ରାଜନୈତିକ ଓ ସାଂସ୍କୃତିକ ଦୃଷ୍ଟିରୁ ଏହି ରାଷ୍ଟ୍ରଗୁଡ଼ିକ ମୁକ୍ତରାଷ୍ଟ୍ର ଭାବେ ନିଜର ପରିଚିତି ସାବ୍ୟସ୍ତ କରିବାକୁ ଚେଷ୍ଟା କରିଥିଲେ । ଏହି ଅବସ୍ଥାନ୍ତର ସମୟରେ ଫରାସୀ ସାହିତ୍ୟ ଆନ୍ଦୋଳନର ପ୍ରଭାବ ମଧ୍ୟ ଏମାନଂକ ଉପରେ ଗଭୀର ଭାବେ ଅନୁଭୂତ ହୋଇଥିଲା । ଏକ ସ୍ୱାଧୀନ ଓ ସ୍ୱତନ୍ତ୍ର ଲାଟିନ୍ ଆମେରିକୀୟ ସାହିତ୍ୟ ଗଢ଼ି ତୋଳିବା ଆନ୍ଦୋଳନର ପ୍ରମୁଖ ପ୍ରବର୍ତ୍ତକ ଥିଲେ ନିକାରାଗୋଆର ରୁବେନ୍ ଡାରିଓ । ଚିଲ୍ଲୀରେ ଏହା ପୂର୍ବରୁ ଖୁବ୍ କମ୍ ଆଧୁନିକ କବି ଥିଲେ । ଆର୍ଜେଣ୍ଟିନା ଯିବା ପୂର୍ବରୁ ଚିଲ୍ଲୀ ହିଁ ଥିଲା ରୁବେନ୍‌ଂକ ସୃଷ୍ଟିସ୍ଥଳ ।

ଏହି ପୃଷ୍ଠଭୂମିରେ ପାବ୍ଲୋ ନେରୁଦା (୧୯୦୪-୭୩) ଲେଖାଲେଖି ଆରମ୍ଭ କରିବା ସମୟରେ ଚିଲ୍ଲୀରେ କବିତାର ପରଂପରା ଥିଲା ଖୁବ୍ ଦୃଢ଼ । ତାଂକ ପୂର୍ବରୁ ଗାବ୍ରିଏଲ୍ ମିଷ୍ଟ୍ରାଲ୍, ଭିନ୍‌ସେଣ୍ଟ ହାଇଡୋବ୍ରୋ, ପାବ୍ଲୋ ଡି' ରୋଖା ଆଦି କବିମାନେ ଥିଲେ ଖୁବ୍ ଖ୍ୟାତିସଂପନ୍ନ । ଏହି ସମୟରେ ସମଗ୍ର ଇଉରୋପୀୟ ଓ ଲାଟିନ୍ ଆମେରିକୀୟ ସାହିତ୍ୟରେ ସରରିଆଲିଜିମ୍ ଖୁବ୍ ପ୍ରଭାବଶାଳୀ ପରଂପରାଟିଏ ହୋଇ ରହିଥାଏ । ଏ ଭିତରେ ୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ରୁଷିୟ ବିପ୍ଲବର ପ୍ରଭାବ ମଧ୍ୟ ଅନୁଭୂତ ହେବା ଆରମ୍ଭ ହୋଇଥାଏ । ଚିଲ୍ଲୀ ଥିଲା ଏସବୁ ସାହିତ୍ୟିକ ମତବାଦର ପରୀକ୍ଷାସ୍ଥଳୀ ।

ଟେମୁକୋ ହିଁ ଥିଲା ନେରୁଦାଂକ ସମଗ୍ର କାବ୍ୟିକ ଜୀବନର ଭିତ୍ତିଭୂମି । ଟେମୁକୋରେ ତାଂକ ଘରର ଛାତ ଥିଲା ଦସ୍ତାରେ ତିଆରି । ଛାତ ଉପରେ ପଡୁଥିବା ବର୍ଷାର ଶବ୍ଦ ଖୁବ ଜୋରରେ ଘର ଭିତରକୁ ଶୁଭେ । ବର୍ଷାର ବେଗ ସହ ଧ୍ୱନି ବି ବଦଳିଯାଏ । ଏମିତି ଅନେକ ବର୍ଷା ରାତିରେ ନେରୁଦାଂକ ନିଦ ଭାଂଗିଯାଏ । ଚାରିଆଡ଼େ ବହଳ ଅଂଧାର ଆଉ ଝରିପଡୁଥିବା ବର୍ଷାର ଶବ୍ଦ । ଏଣୁ ତାଙ୍କର ବହୁବହୁ କବିତାରେ ବର୍ଷାର ଧ୍ୱନି ଜୀବନ୍ତ ଲାଗେ । ପାଖରେ ଥିଲା ପୁଏର୍ଟୋ ସାଭେଦ୍ରାର ସମୁଦ୍ରକୂଳ । ଅନେକ ସମୟରେ ସେ ସମୁଦ୍ରକୂଳରେ ଏକା ଏକା ଘୋଡ଼ା ଚଢ଼ି ବୁଲନ୍ତି । ସେଠି ଥିଲେ ଜଣେ କବି ଅଗଷ୍ଟୋ ଉଇଣ୍ଟର । ଦେଖିବାକୁ ଖୁବ୍ ଅପରିଚ୍ଛନ୍ନ, ଦାଢ଼ି ଉପରେ ଦୁଇ ଆଖିରେ ଭରି ରହିଥିଲା ଅମାପ ଭଲପାଇବା । ବୃତ୍ତିରେ ସେ ଥିଲେ ଜଣେ ଲାଇବ୍ରେରୀଆନ୍ । ଖୁବ୍ ସରଳ, ଅନାସକ୍ତ, ଅଣପାରଂପରିକ, ମୁକ୍ତ ମଣିଷ । ତାଂକ ସହ ମିଶି ଅନେକ ବହି ପଢ଼ିଥିଲେ ନେରୁଦା । ଭିକ୍ଟର ହ୍ୟୁଗୋଂକଠାରୁ ମାକ୍‌ସିମ୍ ଗର୍କୀ, ସେରଭେନ୍‌ଟେଜଂକ ଠାରୁ ବଦଲେୟାର । ନେରୁଦାଂକ ଜୀବନ ଓ ଆଦର୍ଶ ଉପରେ ତାଂକ ପ୍ରଭାବ ଥିଲା ପ୍ରଚୁର ।

ଟେମୁକୋରେ ଆଉ ଜଣଂକର ପ୍ରଭାବ ମଧ୍ୟ ତାଂକ ଉପରେ ପଡ଼ିଥିଲା । ତାଂକ ନାଁ ଥିଲା ଲୁସିଆ ଗଡ଼ି । ସେ ଆସି ୧୯୧୯ ମସିହାରେ ଟେମୁକୋ ବାଳିକା ବିଦ୍ୟାଳୟରେ ପ୍ରଧାନ ଶିକ୍ଷୟିତ୍ରୀ ଭାବେ ଯୋଗ ଦେଇଥାନ୍ତି । ମାତ୍ର ୧୫ ବର୍ଷ ବୟସରେ ନେରୁଦାଂକ ସାକ୍ଷାତ

ହୋଇଥିଲା ଗତିଂକ ସହ । ସେତେବେଳେ ସେ କବିତା ଲେଖୁଥିଲେ । ମାତ୍ର କବିତା ବିଷୟରେ କିଛି ନକହି ସେ ନେରୁଦାଂକୁ ଟଲଷ୍ଟୟ, ଦସ୍ତୋଭସ୍କି ଓ ଚେକଭ୍‌ଂକ ବହି ପଢ଼ିବାକୁ ଦେଉଥିଲେ । ପରବର୍ତ୍ତୀ କାଳରେ ସେ ହିଁ ହେଲେ ଗାବ୍ରିଏଲ୍ ମିଷ୍ଟ୍ରାଲ, ଯିଏ ୧୯୪୫ ମସିହାରେ ପ୍ରଥମ ଲାଟିନ୍ ଆମେରିକୀୟ କବିଭାବେ ନୋବେଲ୍ ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

ଟେମୁକୋରେ ନେରୁଦା ମାଙ୍କୁ ନେଇ ଚର୍ଚ୍ଚ ଯାଉଥିଲେ । ଚର୍ଚ୍ଚରେ ହିଁ ଭେଟିଥିଲେ ଗୋଟିଏ ଝିଅକୁ, ତା’ ନାଁ ଥିଲା ମାରିଆ । ସେ ତାଂକ ପ୍ରଥମ ପ୍ରେମିକା ବୋଲି ନେରୁଦା ସ୍ୱୀକାର କରିଛନ୍ତି । ସେଇଠି ପରେ ଆଉ ଜଣେ ଝିଅକୁ ଭଲପାଉଥିଲେ । ତା ନାଁ ଥିଲା ଆମାଲି ଆଲଭିରେ । ଏ ସବୁ ସତ୍ତ୍ୱେ ଏଇଠି ହିଁ ଥିଲା ତାଂକ ଜୀବନର ପ୍ରଚୁର ନିର୍ଜ୍ଜନତା, ଯାହା କବଳରୁ ସେ ସାରାଜୀବନ ମୁକୁଳି ପାରିନଥିଲେ ।

ମାତ୍ର ତେର ବର୍ଷ ବୟସରେ, ୧୯୧୭ ମସିହାରେ ତାଂକର ପ୍ରଥମ ଲେଖା ପ୍ରକାଶିତ ହୋଇଥିଲା ମାନାନା ସମ୍ବାଦପତ୍ରର ୧୮ଜୁଲାଇ ସଂଖ୍ୟାରେ, ନେଫ୍‌ତାଲି ରେଇସ୍ ନାମରେ । ଏହା କବିତା ନୁହେଁ, ଥିଲା ପ୍ରବଂଧଟିଏ । ଯେଉଁଥିରେ ସେ କଲମ୍ବସ୍ ଓ ମାର୍କୋନିଂକ ପରି ସାରାଜୀବନ ଆବେଗ ଓ ନିଷ୍ଠାର ସହ କାର୍ଯ୍ୟ କରିବାକୁ ଆହ୍ୱାନ ଦେଇଥିଲେ । ଏହି ସମ୍ବାଦପତ୍ରର ସଂପାଦକ ଥିଲେ ଜଣେ ମୁକ୍ତଚିନ୍ତକ ଓ ସାମାଜିକ ଅଂଗୀକାରବଦ୍ଧ ଲେଖକ । ପୁଣି ସେ ଥିଲେ ନେରୁଦାଂକ କବିତାର ମୁଗ୍ଧ ପାଠକ ଓ ପ୍ରଶଂସକ । କବିତା ରଚନା ପୁଣି ସମାଜସଚେତନତାର ପ୍ରେରଣା ପ୍ରଥମେ ସେ ତାଂକଠାରୁ ହିଁ ପାଇଥିଲେ । ସେ ସମୟରେ ନେଫ୍‌ତାଲି ରେଇସ୍ ନାମରେ ସେ କବିତାମାନ ଲେଖୁଥିଲେ । ଏ ମଧ୍ୟରୁ ଷୋଳଟି କବିତା ୧୯୧୮ ଶେଷଭାଗ ଓ ୧୯୧୯ ପ୍ରଥମ ଭାଗରେ ସାଣ୍ଟିଆଗୋରୁ ପ୍ରକାଶିତ ପତ୍ରିକା ନୋରେ-ଭ୍ୟୁଲାରେ ପ୍ରକାଶିତ ହୋଇଥିଲା ।

ଏଇ ସମୟରେ କବିତାଗୁଡ଼ିକ ଥିଲା ମୁଖ୍ୟତଃ ଆତ୍ମଜୀବନୀ ମୂଳକ । ୧୯୧୮ ମସିହା ଅକ୍ଟୋବର ୧୦ ତାରିଖରେ ପ୍ରକାଶିତ ପ୍ରଥମ କବିତାର ଶୀର୍ଷକ ଥିଲା ‘ଚକ୍‌ଚର୍ନ’-

'ଏବେ ତ ରାତି
ମୁଁ ଦୁଃଖୀ ଓ ଏକାକୀ
ଅସ୍ଥିର ମହମ୍‌ବତି ଆଲୁଅରେ
ମୁଁ ଭାବେ ନାନା କଥା:
ଜୀବନର ଦୁଃଖସୁଖ
କ୍ଲାନ୍ତି, ବୃଦ୍ଧାବସ୍ଥା
ଆଉ ସୁନ୍ଦର ଓ ଉଦ୍ଧତ ଯୌବନ ।
ଯେତେବେଳେ ରାତି ଆସେ
ଶୃଗାଳ ପାଟିପରି ଅଂଧାର ଭିତରେ
ମୁଁ ନିଜକୁ ହଜାଇଦିଏ
ତିକ୍ତ ଓ ଦୁଃଖଦ ସ୍ମୃତିରେ ।

୧୯୨୦ ମସିହାରେ ଏକ ଗ୍ରୀଷ୍ମ ଅପରାହ୍ନରେ ସାଭେଦ୍ରାର ସମୁଦ୍ରକୂଳରେ ସେ ଭେଟିଥିଲେ ଗୋଟିଏ ଝିଅକୁ । ସେ ଆସିଥିଲା ନିଜ ପରିବାର ସହ ଖରାଦିନ କଟାଇବାକୁ । ତା ନାଁ ଥିଲା ଟେରେସା ଭାସ୍କ୍ୱେଜ୍ । ନେରୁଦା ତାକୁ ଟେରୁସା ବୋଲି କହନ୍ତି- 'ଟେରୁସା ମୋ ପ୍ରଥମ ଯନ୍ତ୍ରଣାର କୃଷ୍ଣ ସ୍ଫୁଲିଂଗ ।' ତାଂକ ପାଇଁ ଲେଖିଥିଲେ ଅନେକ ଅନେକ କବିତା । ସେହି ସମୟରେ ପ୍ରକାଶିତ ଏକ କବିତାର ଶୀର୍ଷକ ଥିଲା 'ମୁଁ ପ୍ରେମରେ ପ୍ରମତ୍ତ' । ସେ କବିତାରେ କୌଣସି ରୋମାଣ୍ଟିକ ଅନୁଭୂତି ନଥିଲା ବରଂ ଥିଲା ବିଶୁଦ୍ଧ ଦୈହିକ କାମନା-

'ମୋତେ ଦିଅ ଉଷ୍ମ ସ୍ତନ ଆଉ ତୁମ ଲୋଭନୀୟ ଆଖି
ତାହା ଯଦି ତୁମେ ମୋତେ ନଦେଇପାରିବ
ମୋ ପ୍ରେମର ପ୍ରତିଫଳ କଣ ବା ମିଳିବ ?'

ନେଫ୍‌ତାଲିଂକ କବିତା ଲେଖାରେ ତାଂକ ପିତା ଆଦୌ ଖୁସି ନଥିଲେ । ୧୯୨୦ ମସିହାରେ ସେ ୧୬ବର୍ଷ ବୟସରେ ପାବ୍ଲୋ ନେରୁଦା ନାମରେ ଲେଖାଲେଖି ଆରମ୍ଭ କଲେ । ନେରୁଦା ନାମରେ ପ୍ରକାଶିତ ପ୍ରଥମ କବିତାର ଶୀର୍ଷକ ଥିଲା 'ଲଷ୍ଟଲଭ୍', ତାହା କ୍ଲାରିଡାଡ୍ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ମାର୍ଚ୍ଚ ୧୯୨୦ ମସିହାରେ ସେ ଟେମୁକୋ ଛାଡ଼ି ସାଣ୍ଟିଆଗୋ ଚାଲି ଆସିଥିଲେ । ସାଣ୍ଟିଆଗୋ ଉତ୍ତରରେ ଥିବା ମାପୋଚା ନଈକୂଳରେ ଘରଭଡ଼ା ନେଇ ରହୁଥିଲେ । ଘରୁ ନଈ ଓ ସୂର୍ଯ୍ୟାସ୍ତର ଦୃଶ୍ୟ ଥିଲା ଖୁବ୍

ଆକର୍ଷଣୀୟ । ଗୋଧୂଳିର ବର୍ଣ୍ଣାଳୀ ଥିଲା ଅତ୍ୟନ୍ତ ଲୋଭନୀୟ । ଏଇଥିପାଇଁ ୧୯୨୩ ମସିହାରେ ପ୍ରକାଶିତ ତାଂକ ପ୍ରଥମ କବିତା ସଂକଳନର ନାଁ ଦେଇଥିଲେ 'କ୍ରେପୁସ୍କୁଲାରିଓ' ବା 'ଗୋଧୂଳିର ବହି' ।

ସାଣ୍ଟିଆଗୋରେ ସେ ଆଉ ଟେରୁସାଂକୁ ଭେଟିପାରୁନଥିଲେ । ଏଥିପାଇଁ ସେ ଅନେକ ପ୍ରେମପତ୍ର ଲେଖିଛନ୍ତି । ତାକୁ 'ବସନ୍ତର ରାଣୀ' ବୋଲି କହୁଥିଲେ । ୧୯୨୧ରୁ ୧୯୨୩ ମସିହା ମଧ୍ୟରେ ସେ ଅନେକ କବିତା ଲେଖିଛନ୍ତି ଟେରୁସାଂକ ଉଦ୍ଦେଶ୍ୟରେ । ସାଣ୍ଟିଆଗୋରେ ସେ ଆଉ ଗୋଟିଏ ଝିଅକୁ ଭଲପାଉଥିଲେ । ସେ ଥିଲେ ନିଜ ବଂଧୁ ରୁବେନ୍ ଅଜୋକାରଂକ ସାନଭଉଣୀ ଆଲବର୍ଟିନା ରୋଜା ଆଜୋକାର । ସେତେବେଳକୁ ନେରୁଦାଂକୁ ଷୋଳବର୍ଷ ଓ ଆଲବର୍ଟିନାଂକୁ ଅଠରବର୍ଷ । ଟେରୁସାଂକୁ ଖୁବ୍ ଭଲ ପାଉଥିବା ସମୟରେ ବି ଆଲବର୍ଟନାକୁ ପ୍ରେମ କରୁଥିଲେ । ଜୀବନର ବହୁ ବର୍ଷଯାଏ ସେ ଆଲବର୍ଟିନାକୁ ଭଲପାଇଛନ୍ତି । ୧୯୩୨ ମସିହାଯାଏ ସେ ସବୁ ପ୍ରାୟ ୧୧୧ଟି ଚିଠି ଲେଖିଥିଲେ ଆଲବର୍ଟିନାଂକୁ । ସେତେବେଳକୁ ତାଂକ ବିବାହର ଦୁଇବର୍ଷ ପୂରିଥାଏ । ତାଂକର ଏଇ ପ୍ରଥମ ପର୍ଯ୍ୟାୟ କବିତାରେ ଉରୁଗୁଏର କବି ସବାଟ୍ ଏରକାଷ୍ଟିଂକ ପ୍ରେମ କବିତାର ପ୍ରତିଧ୍ୱନି ବାରିହୋଇ ପଡୁଥିଲା ବୋଲି ତାଂକ ବହୁ ବଂଧୁ ଅଭିଯୋଗ କରୁଥିଲେ । ଏହି ପର୍ଯ୍ୟାୟର କବିତା ଗୁଡ଼ିକ ଥିଲା ଦେହ ସଂପର୍କୀୟ, ସମ୍ଭୋଗ ସର୍ବସ୍ୱ, ଅନେକ ଯୌନ ରୂପକଳ୍ପରେ ଭରପୂର । ନେରୁଦା କହନ୍ତି ଏସବୁ କବିତାରେ- 'ମୁଁ ଚିତ୍କାର କରି କାନ୍ଦେ ଆଉ କାମନା କରେ ।'

ନେରୁଦାଂକ କବି ଜୀବନର ଆଦ୍ୟଖ୍ୟାତି ତାଙ୍କର ପ୍ରେମ କବିତା ପାଇଁ । ୧୯୨୪ ମସିହାରେ ପ୍ରକାଶିତ 'ଟୋନ୍‌ଟି ଲଭ୍ ପୋଏମସ୍' ପାଇଁ ସେ ଜଣେ ଲୋକପ୍ରିୟ କବି ପାଲଟିଯାଇଥିଲେ । ଏହି କବିତାଗୁଡ଼ିକରେ ଥିଲା ଜଣେ ଯୁବକ ଜୀବନର ପ୍ରେମ, ଆବିଷ୍କାର, ନାରୀ, ପୃଥିବୀ ଏବଂ ନିଜର ଏକ ଦୁଃଖଦ ବିଚ୍ଛେଦଭାବ । ଅବଶ୍ୟ କବିତା ଗୁଡ଼ିକରେ ଦୁଇଜଣ ନାରୀଂକ ସଂପର୍କରେ କୁହାଯାଇଛି । ଜଣେ ଟେମୁକୋର ଟେରୁସା ଆଉଜଣେ ସାଣ୍ଟିଆଗୋର ରୋଜାରୁ । ଟେରୁସା ମଧ୍ୟ ମାରିସୋଲ୍ ଭାବେ ପରିଚିତ । ସେ ଥିଲା ଗାଁ ଭୂଇଁର ଝିଅ । 'ଟ୍ୱେନ୍‌ଟି ଲଭ ପୋଏମସ୍'ର ଅର୍ଦ୍ଧାଧିକ କବିତା ତାରି

ଉଦ୍ଦେଶ୍ୟରେ, ଅନ୍ୟ ଅର୍ଦ୍ଧେକ ରୋଜାରୁ ବା ମାରିସୋମ୍ବ୍ରା ପାଇଁ । ସେ ଥିଲା ସହରୀ । ଉଭୟ ନାରୀ ବିଶାଳ ପ୍ରକୃତି, ଆକାଶ, ସମୁଦ୍ର, ତାରାପୁଂଜ ଭିତରେ ଲୀନ ହୋଇଯାଉଛନ୍ତି; ପରିବର୍ତ୍ତନ ହୋଇ ଯାଉଛନ୍ତି ମାଟିରେ, ନଈରେ, କୁହୁଡ଼ିରେ । କବି ସେମାନଂକୁ ଆବିଷ୍କାର କରିବାକୁ ଚେଷ୍ଟା କରୁଛନ୍ତି । ଏବଂ ସମଗ୍ର ପୃଥିବୀ ପରିପ୍ରେକ୍ଷୀରେ କବି ନିଜକୁ ହିଁ ବ୍ୟାଖ୍ୟା କରିଛନ୍ତି । ଟେମୁକୋରେ ସେଇ ପିଲାଦିନର କୁହୁଡ଼ି ସେଇ ରହସ୍ୟ ତାଂକ କବିତାରେ ବାରିହୋଇପଡ଼େ ।

'ଧୂଆଁରେ ଲେଖିଦିଏ କିଏ ତମ ନାଁ
ଦକ୍ଷିଣ ଦିଗର ତାରା ଗହଣରେ
ମତେ ଦିଅ ମନେରଖିବାକୁ
ଯେଉଁପରି ତୁମେ ଥିଲ ରହିବା ପୂର୍ବରୁ ।'

ଏଇ ରହସ୍ୟ, ପ୍ରହେଳିକା ଭିତରୁ ନାଁ ଖୋଜିବାର ଚେଷ୍ଟା, ପ୍ରଶ୍ନ ପଚାରିବାର ଓ ଆବିଷ୍କାର କରିବାର ଇଚ୍ଛା, ପୁଣି ଦୂରତ୍ୱ ସହ ତାରାଂକ ସହ ନାରୀମାନଂକୁ ଚିହ୍ନିତ କରିବା ଏସବୁ ତାଂକ ପ୍ରେମକବିତାର ମୁଖ୍ୟ ବିଭାବ ।

ଏହି ସମୟରେ ସ୍ପେନୀୟ କବି ଜୁଆନ୍ ଜିମେନେଜ୍‌ଂକ ପ୍ରଭାବରେ ସେ ପ୍ରଭାବିତ ହୋଇଥିଲେ । ପରବର୍ତ୍ତୀ କାଳରେ ଜୁଆନ ନୋବେଲ୍ ପୁରସ୍କାର ପାଇଥିଲେ । ଜୁଆନ୍ ଥିଲେ ଜଣେ ନବ୍ୟ ରୋମାଣ୍ଟିକ୍ । ଏହି ସମୟରେ ନବ୍ୟ ରୋମାଣ୍ଟିକ୍‌ମାନଂକର କବିତାରେ ଭରି ରହିଥିଲା ବିଷଣ୍ଣତା ଓ ବିଷାଦ । ଏଭଳି ପ୍ରେମ କବିତା ଥିଲା ଖୁବ୍ ବ୍ୟକ୍ତିଗତ । ଯୁବାବସ୍ଥାରେ ଆବେଗର ସ୍ୱଚ୍ଛ ଉଷ୍ଣତା ଭିତରେ ଲେଖା ହେଉଥିଲା ଏସବୁ କବିତା । ନେରୁଦା ଥିଲେ ଏହି ପରଂପରାର ଜଣେ ସାର୍ଥକ ସ୍ରଷ୍ଟା । ଯେଉଁ ଦୁଇନାରୀ ତାଂକ ସ୍ୱପ୍ନ, କଳ୍ପନାକୁ ରଂଗ ଦେଇଥିଲେ ସେମାନେ ଥିଲେ ଟେମୁକୋର ଟେରୁସା ଭାସକ୍ୱେଜ୍ ଲିଓନ୍ ଓ ଆର୍ଜେଣ୍ଟିନାର ରୋଜାରୁ । ଏବେ ରୋଜାରୁଂକୁ ନୂତନ ଭାବରେ ଚିହ୍ନଟ କରାଯାଇଛି । ତାଂକର ପ୍ରକୃତ ନାଁ ହେଉଛି ଆଲବର୍ଟିନା ରୋଜା ଆଜୋକାର ସୋଟୋ । ସେ ଥିଲେ ତାଂକ ଘନିଷ୍ଠ ବଂଧୁ ରୁବେନ୍ ଆଜୋକରଂକ ସାନଭଉଣୀ । କବିତାରୁ ଯାହା ଜଣାପଡ଼େ ଟେରୁସା ଥିଲେ ଖୁବ୍ ସୁନ୍ଦରୀ । ମାତ୍ର ଆଲବର୍ଟିନା ଥିଲେ ଖୁବ୍ ଶାନ୍ତ,

ସରଳ । କୁହାଯାଏ ଯେ 'ଟ୍ୱେଣ୍ଟି ଲଭ ପୋଏମସ୍' ସଂକଳନର ତୃତୀୟ ଚତୁର୍ଥ, ସପ୍ତମ, ଏକାଦଶ, ଦ୍ୱାଦଶ, ଚତୁର୍ଦ୍ଦଶ, ସପ୍ତଦଶ ଓ ବିଂଶ କବିତା ଗୁଡ଼ିକ ଟେରୁସାଂକ ଉଦ୍ଦେଶ୍ୟରେ ଲିଖିତ । ଅନ୍ୟଗୁଡ଼ିକ ଆଲବର୍ଟିନାଂକ ପାଇଁ । ଅବଶ୍ୟ ପରବର୍ତ୍ତୀ କାଳରେ ଟେରୁସା ଜଣେ ଟାଇପ୍ ରାଇଟର ମେକାନିକ୍‌କୁ ବିବାହ କରିଥିଲେ । ଏଇଥିପାଇଁ ତାଂକର ଧାଡ଼ିରୁ ଦୁଃଖ, ବିଷାଦ ଝରିପଡ଼େ । ଏଣୁ ତାଂକ ପ୍ରଥମ କବିତାରେ ରହିଛି-

'ଅପରାହ୍ନ ଭିତରକୁ ଝୁଂକିପଡ଼ି
ଫିଙ୍ଗି ଥିଲି ମୋ ଦୁଃଖ ଜାଲକୁ
ତୁମର ଆଖି ମହା ସମୁଦ୍ରକୁ'
ଅଥବା-
'ତୁମେ ଖାଲି ଅନ୍ଧାରକୁ ବିଂବିତ କରାଅ
ହେ ମୋର ସୁଦୂର ନାୟିକା
ତୁମ ଚାହାଣିରୁ ବେଳେବେଳେ ଛନ୍ନୁନିଏ
ଅତଂକର ଉପକୂଳଟିଏ ।'

ସେତେବେଳକୁ ୧୯୧୩ ମସିହାରେ ଏକମାତ୍ର ପ୍ରାଚ୍ୟ କବିଭାବେ ରବୀନ୍ଦ୍ରନାଥ ନୋବେଲ୍ ପୁରସ୍କାର ପାଇଥାନ୍ତି । ନେରୁଦା ଥିଲେ ରବୀନ୍ଦ୍ରନାଥଂକ ଜଣେ ସଶ୍ରଦ୍ଧ ପାଠକ । ସ୍ପେନୀୟ ଭାଷାରେ ତାଂକ ବହୁ କୃତିର ଅନୁବାଦ ହୋଇସାରିଥାଏ । ଏଣୁ ନେରୁଦା ଏହି ସଂକଳନର ଷୋଡଶ କବିତାଟିକୁ ରବୀନ୍ଦ୍ରନାଥଂକ 'ଗାର୍ଡନର' କବିତାର ଭାବାନ୍ତର ଭାବେ ଲେଖିଛନ୍ତି । ଏ କବିତାରେ ଅଛି ପ୍ରାଚ୍ୟର ପ୍ରେମ ଓ ରହସ୍ୟବାଦର ପରିଭାଷା ।

'ମୋ ଆତ୍ମା ଆଲୋକ
ତୁମ ପାଦେ ରଂଗ ଅବା ଭରେ
ମୋ ଉତ୍କଟ ସ୍ୱର
ମିଠା ମିଠା ଡମରି ଓଠରେ ।
ହେ ମୋ ସଂଚ-ସଂଗୀତର ଅମଳକାରୀଣି
କେମିତି ମୋ ନିକାଞ୍ଚନ ସ୍ୱପ୍ନମାନେ
ଭାବିଥାନ୍ତି ତୁମେ ମୋର ବୋଲି ।'

ଏଥିପାଇଁ ଧୀବରର ପୃଥିବୀଟିଏ ସଂଙ୍ଗ ଓ ସଙ୍ଗୀତ ଭିତରେ ପାଲଟି ଯାଏ ପ୍ରେମିକର ପୃଥିବୀ ।

'ହେ ପ୍ରିୟତମା ମୋର
ତୁମେ ବଂଦୀ ସଂଗୀତ ଜାଲରେ
ଏବଂ ମୋ ସଂଗୀତ ଜାଲ
ଲମ୍ବିଥାଏ ଆକାଶ ଯେପରି ।'

ଅଥବା-

'ମୁଁ ଦେଖେ ମୋ ଚାରିକଡ଼େ
ତୁମ କଟି ଯାହା ଗଢ଼ା ଘନ କୁହୁଡ଼ିରେ
ଏବଂ ତୁମ ନୀରବତା ଖୋଜୁଥାଏ
ମର୍ମାନ୍ତିକ ମୁହୂର୍ତ୍ତମାନଂକୁ
ମୋ ଚୁମ୍ବନ ନିରାପଦେ ଦୃଢ଼ ହୋଇ ରହିଯାଏ
ମୋ ଆର୍ଦ୍ର କାମନାମାନ ବସା ବାଂଧେ
ତୁମ ବାହୁବଂଧନରେ
ଯାହା ଗଢ଼ା ସ୍ୱଚ୍ଛ ପଥରଖଂଡରେ ।'

ନଥିବା ପଣରେ, ନିର୍ଜ୍ଜନତା ଭିତରେ ପ୍ରେମର ଅନୁଭବ ନେରୁଦାଂକ ବିଶେଷତ୍ୱ - ଚାରିପଟେ ସମୁଦ୍ର, ନିର୍ଜ୍ଜନତା, ବିତୁନଥିବା ସମୟ । ଏଇଥିପାଇଁ ତାଂକର ପ୍ରେମ ନୀରବତାର ଶବ୍ଦ, ମହୁମାଛିର ଗୁଣୁଗୁଣୁ ।

ତୁମେ ନାହିଁ ଯଦିବା ଏଠାରେ
ତୁମ ଗୁଣୁଗୁଣୁ ସ୍ୱନ ମୋ ଆତ୍ମା ଭିତରେ
ତୁମ ପୁଣି ବଂଚିରୁହ ସମୟ ଭିତରେ
ଯାହା ଥାଏ କ୍ଷୀଣ ଓ ନିର୍ଜ୍ଜନ
ଆଃ, ତୁମେ ତ ନୀରବ ।

'ଟ୍ୱେନ୍‌ଟି ଲଭ ପୋଏମସ୍'ର ବିଂଶତମ କବିତା 'ଆଜିରାତି ରଚିପାରେଁ...' ସ୍ପେନ ଓ ଲାଟିନ୍ ଆମେରିକୀୟ ତରୁଣମାନଂକ ପାଇଁ ଥିଲା ଉନବିଂଶ ଶତାବ୍ଦୀର ରୋମାଣ୍ଟିକ୍ କବି ଗୁସ୍ତାଭ ଆଡ଼ଲଫ୍ ବେକୁରଂକ କବିତାର ପ୍ରତିଧ୍ୱନି । ଏଣୁ ପୂର୍ବ କବିତା ଗୁଡ଼ିକର ପ୍ରେମ ଧାରା ହଠାତ୍

ଏକ ଦୁଃଖଦ ମୋଡ଼ ନିଏ । ରାତି ଏଠି ଖଣ୍ଡବିଖଣ୍ଡିତ । ସ୍ୱପ୍ନ ବିପର୍ଯ୍ୟସ୍ତ, ତାରାମାନେ ଦୁଃଖରେ କଂପିତ ।

'ଆଜିରାତି ରଚିପାରେ ଧାଡ଼ିମାନ ସବୁଠୁଁ ଦୁଃଖଦ
ଯଥା ଏ ଯାମିନୀ ଆଜି ତାରକିତ
ତାରାମାନେ ନୀଳ ଏବଂ ସୁଦୂର କଂପିତ'

ପୁଣି ଭଲ ପାଇବାରେ ସ୍ଥିରତା ନଥାଏ । ଥାଏ କେବଳ ଆଶା ଓ ଆଶଂକା । ଏଇଥିପାଇଁ ପ୍ରେମିକ ସଂଦିଗ୍ଧ ।

'ମୁଁ ତ ଭଲ ପାଉଥିଲି ତାକୁ
ସେ କେବେ କେମିତି ପୁଣି
ମତେ ମଧ୍ୟ ପାଉଥିଲା ଭଲ'

ହଜେଇ ଦେବାର ଯନ୍ତ୍ରଣା, ନପାଇବାର ଦୁଃଖ, ଭଲ ପାଉଛି କି ନାହିଁ- ଏ କଥାର ଦ୍ୱନ୍ଦ୍ୱ, ହତାଶାଭାବ ସବୁ ମିଶି ପ୍ରେମକୁ ଏକ ଉତ୍ତରିତ ସ୍ତରକୁ ନେଇଯାଏ ।

'ଏହା ହିଁ ତ ସବୁକିଛି
କେହି ଜଣେ ଗୀତ ଗାଏ
ଦୂରରେ ଓ ଅନେକ ଦୂରରେ
ଆତ୍ମା ମୋର ମାନେ ନାହିଁ
ତାକୁ କେବେ ହରାଇଛି ବୋଲି '
ଅଥବା-
'ମୁଁ ପାଉନି ଭଲ ତାକୁ
ଏ କଥା ନିଶ୍ଚିତ
କିନ୍ତୁ ଏହା ମଧ୍ୟ ହୋଇପାରେ
ମୁଁ ପାଉଛି ଭଲ ।'

ପାସୋରି ଯିବା ପ୍ରେମର ଅନ୍ୟ ଏକ ପରିଭାଷା । ନ ପାଇବାର ଦୁଃଖ ଲମ୍ୱିଥାଏ ବିସ୍ମୃତି ଭିତରେ ବି । ପାଇବାର ମୋହ, ନପାଇବାର ଦୁଃଖ ସବୁ ଯେମିତି ସେଠି ଏକାକାର ।

'ପ୍ରେମ ସିନା ପରିମିତ
କି ସୁଦୀର୍ଘ ବିସ୍ମୃତି ଅଥଚ !'

'ଟ୍ୱେନ୍‌ଟି ଲଭ୍ ପୋଏମସ୍' ଛନ୍ଦ ଓ ଲାଳିତ୍ୟ ପାଇଁ ପାଠକଂକର

ଏତେ ପ୍ରିୟ, ଏ କଥା କବି ନେରୁଦା ନିଜେ ସ୍ୱୀକାର କରିଛନ୍ତି । 'କବି ସାବାତି ଏରକାଷ୍ଟିଂକ ସଂପର୍କରେ ଆସି ମୁଁ ସଚେତନ ଭାବେ ଶୈଳୀରେ ପରିବର୍ତ୍ତନ ପାଇଁ ପ୍ରୟାସ କଲି । ଜାଣିଶୁଣି ବକ୍ତବ୍ୟ ପ୍ରଧାନ କବିତା ଲେଖିବା ବଂଦ କରିଦେଲି । କାରଣ ଏଭଳି କବିତା ମାଧ୍ୟମରେ ଉତ୍ତରଣ ସମ୍ଭବ ନୁହେଁ । ଛଳନା ଓ ଅଭିନୟକୁ ବାଦ ଦେଇ ଦୁନିଆର ଛନ୍ଦ ଓ ଲାଳିତ୍ୟ ଅନୁଭବ କରିବାକୁ ଚେଷ୍ଟା କଲି । ଯାହାର ଫଳପ୍ରସୂ 'କୋଡ଼ିଏଟି ପ୍ରେମ କବିତା' । ଏହି ବହିଟି ମୋର ଅତିପ୍ରିୟ । କାରଣ ଏଥିରେ ଅନେକ ପରିମାଣରେ ଦୁଃଖ ଓ ଯନ୍ତ୍ରଣା ରହିଥିଲେ ମଧ୍ୟ ଜୀବନର ଆକର୍ଷଣ ଓ ମଧୁରତାର କଥା ଏହାର ମୁଖ୍ୟ ସ୍ୱର । ଗୋଟିଏ ନଦୀ (ଇମ୍ପାରିଆଲ ରିଭର) ଓ ତା'ର ମୁହାଣ ଏହି ବହିଟି ଲେଖିବାକୁ ମୋତେ ପ୍ରେରଣା ଯୋଗାଇଥିଲା ।

ଏହି ସଂକଳନଟିକୁ ମୋ ପ୍ରେମକାହାଣୀ ମଧ୍ୟ କୁହାଯାଇପାରେ । ସାଣ୍ଟିଆଗୋ ସହର, ସେଠାକାର ରାସ୍ତା, ରାସ୍ତାର ଭିଡ଼, ବିଶ୍ୱବିଦ୍ୟାଳୟ ଏ ସବୁରେ ଥିଲା ସଫଳ ପ୍ରେମର ମହୁ ଭଳି ମଧୁର ମହକ । କିନ୍ତୁ ପ୍ରକୃତି ବର୍ଣ୍ଣନା କଲାବେଳେ ମୋ ଆଖିରେ ଥିଲା ଚିଲ୍ଲୀର ଦାକ୍ଷିଣାତ୍ୟ, ଟେମୁକୋ । 'ସଂଗ ଅଫ୍ ଡେସ୍‌ପାୟର'ରେ ଯେଉଁ ନଈଘାଟ ଓ ମୁହାଣ କଥା କୁହାଯାଉଛି ତା ହେଉଛି ପୁରୁଣା ଜାହାଜ ନିର୍ମାଣ ସ୍ଥାନ କାରାହ୍ୟୁ ଓ ବାଜୋ ଇମ୍ପୋରିଆଲ । ଆଜି ବି ସେଇ ନଦୀ ମୁହାଣରେ ଶୁଭୁଥାଏ ଗଲ ପକ୍ଷୀ ଡେଣାର ଶବ୍ଦ । କେଉଁ ଏକ ଜାହାଜର ଧ୍ୱଂସସମୟରେ ପରିତ୍ୟକ୍ତ ଜୀବନତରୀ ଭିତରେ ମୁଁ ପଢ଼ିଥିଲି ଜାଁ ଖ୍ରୀଷ୍ଟୋଫର ଓ ଲେଖିଥିଲି ନିରାଶାର ଗୀତ । ମୁଣ୍ଡ ଉପରେ ଆକାଶର ରଂଗ ଥିଲା ଅସ୍ୱାଭାବିକ ଭାବେ ନୀଳ । ଏତେ ଗାଢ଼ ନୀଳ ଆକାଶ ମୁଁ ଆଉ କେବେ ଦେଖିନି । ସେହି ସମୟର ଗଭୀରତା ଥିଲା ସଂପୂର୍ଣ୍ଣ ନିଆରା । ସେଇଥିପାଇଁ ମୋ ବ୍ୟତୀତ ମୋ କବିତାରେ ଥିଲା ଆଉ ଆଜି ବି ଅଛି ଦୂର ସମୁଦ୍ରର ଶବ୍ଦ, ପକ୍ଷୀଂକ କାକଳୀ, ନିଜ ନିଆଁରେ ସଂପୂର୍ଣ୍ଣ ଧ୍ୱଂସ ନହୋଇ ସବୁବେଳେ ଜଳୁଥିବା ବୁଦା ଭଳି ପ୍ରେମର ଜ୍ୱଳନ ।'

ନେରୁଦାଂକ ନିଜ ବକ୍ତବ୍ୟରୁ ଜାଣିହୁଏ ତାଂକ କବିତାର ପୃଷ୍ଠଭୂମି, ପ୍ରେମର ପରିବର୍ତ୍ତନଶୀଳ ସଂଜ୍ଞା ଯାହା ସବୁବେଳେ ପ୍ରେମିକକୁ ଅତିକ୍ରମ କରି ଚାଲିଥାଏ । ଭଲ ପାଇବାର ଏଇ ମୌଳିକ ଆବେଗ, ପ୍ରତିକ୍ରିୟା

ବି ଭିନ୍ନ ଭିନ୍ନ । ସେ କ୍ରମଶଃ ଅନୁଭବ କରିଛନ୍ତି ଯେ ପ୍ରେମ ସବୁବେଳେ ପ୍ରେମିକାକୁ ପାର ହୋଇଯାଏ । ପ୍ରେମିକା କେବଳ ପ୍ରେମର ପ୍ରସଂଗଟିଏ ହୋଇ ରହିଯାଏ । ପ୍ରଚଳିତ ସ୍ପେନୀୟ କାବ୍ୟପରଂପରାରୁ ସେ ଦୂରେଇଯାଇ ଏକ ଭିନ୍ନ ଦୃଷ୍ଟିରେ ଦେଖିଛନ୍ତି ପ୍ରେମକୁ । ଯେମିତି ନିଜ ଦେଶ ଚିଲ୍ଲୀକୁ ଭଲ ପାଇବା କ୍ରମେ କ୍ରମେ ସାରା ବିଶ୍ୱକୁ ବ୍ୟାପି ଯାଇଛି- ତାଂକ ଭାଷାରେ 'ଭେଦି ଯାଇଛି ପୃଥିବୀର ଚର୍ମ ଭିତରକୁ ।' ସେହିଭଳି ନାରୀମାନଂକ ପ୍ରତି ତାଂକ ପ୍ରେମ କୌଣସି ନିର୍ଦ୍ଦିଷ୍ଟ ପ୍ରେମିକା ପାଖରେ ସୀମାବଦ୍ଧ ହୋଇ ରହିପାରିନି । ପ୍ରେମର ଏଇ ବ୍ୟକ୍ତିଗତ ଅନୁଭବଟିଏ ଏକ ବୃହତ୍ ଅଂଗୀକାର ପାଲଟିଯାଇଛି । ତାଂକ ପାଇଁ ଏହା ଏକ ବୌଦ୍ଧିକ କସରତ୍ ନଥିଲା, ବରଂ ଥିଲା ଏକ ସ୍ୱଭାବିକ ଧାରା । ପ୍ରେମ ଥିଲା ଏକ ପ୍ରବାହିତ କବିତାର ଧାରା ଯାହା ସବୁ ଦେହକୁ, ସବୁ ପାହାଡ଼କୁ ଛୁଇଁ ଛୁଇଁ ଚାଲିଥାଏ ଆଗକୁ ଆଗକୁ ।

'ସଂଗ୍ ଅଫ୍ ଡେସ୍‌ପାର'ରେ ପୁଣି ଥରେ ସେଇ କଥା । ନାରୀ ପାଖରେ ଅଟକ ରହିପାରୁନଥିବାର ଦେହଟିଏ ।

'ହେ ନାରୀ
ମୁଁ ଜାଣେନା, ଜାଣେନା
କେମିତି ରଖିବ ତୁମେ ମୋତେ
ତୁମରି ଆତ୍ମାର ଏଇ ପୃଥିବୀରେ
ଅବା ତୁମ ବାହୁବଂଧନରେ !'

ସବୁ ନାରୀ, ପ୍ରେମିକାଂକ ସହ ତାଂକ ସମ୍ପର୍କ ଖୁବ୍ ନିବିଡ଼, ଆତ୍ମିକ, ଆବେଗପୂର୍ଣ୍ଣ ପୁଣି କ୍ଷଣସ୍ଥାୟୀ । ବର୍ଷା ତାଂକ ପାଇଁ ନାରୀଟିଏ ପରି ନିବିଡ଼ । ଏଇଥିପାଇଁ ବର୍ଷାଭିଜା ମାଟି, ପାଣି ବାରମ୍ବାର ଫେରୁଥାଏ ତାଂକ କବିତାକୁ । ଟେମୁକୋରୁ ରେଂଗୁନ୍ ଯାଏ । ଟେମୁକୋ ଓ ରେଂଗୁନ୍ ଉଭୟ ସ୍ଥାନରେ ନିର୍ଜ୍ଜନତାକୁ ଏଡ଼ାଇବା ଲାଗି ତାଂକର ଦୁଇଟି ଆଶ୍ରା । କବିତା ଓ ନାରୀର ପ୍ରେମ ।

'ଟ୍ୱେନ୍‌ଟି ଲଭ୍ ପୋଏମସ୍'ର ସବୁ କବିତାର ବିଷୟବସ୍ତୁ ଗୋଟିଏ । ପୁରୁଷ ଓ ନାରୀର ପ୍ରେମ, ବ୍ୟର୍ଥତା, ସମ୍ଭୋଗ ଆଉ ବିଚ୍ଛେଦ । ଏଠି ନେରୁଦାଂକ ବ୍ୟକ୍ତିଗତ ହତାଶା, ଅସ୍ପଷ୍ଟତା, ବିଫଳତା ବିଭ୍ରମ, ଅପୂର୍ଣ୍ଣତା ଓ ସନ୍ଦିଗ୍ଧତା ବାରିହୋଇପଡ଼େ । ପୁଣି ଜଣାପଡ଼େ

ତାଂକ ପ୍ରେମିକା ମାନଂକର ମାନସିକ ଉଦ୍‌ବେଗ, ଜଟିଳତା, ଦ୍ୱନ୍ଦ୍ୱ ଓ ପ୍ରତ୍ୟାଖ୍ୟାନର ସ୍ୱର । ନାରୀଟିଏ ଏଠି ଯୌନ ସମ୍ଭୋଗର ବସ୍ତୁ, ଆଶ୍ରୟସ୍ଥଳୀ, ସ୍ୱର୍ଗୀୟଶକ୍ତି ପୁଣି ଏସବୁ ଏକ ଦୈହିକ ବାସ୍ତବତାର ବଳୟ ଭିତରେ । ଏଇଥିପାଇଁ ତାଂକ ନାରୀ ଥାଏ ପ୍ରେମିକ ପାଖରେ, ପୁଣି ପ୍ରେମିକଠୁ ଅନେକ ଦୂରରେ । ନେରୁଦାଂକ ବର୍ଣ୍ଣନାରେ ଥାଏ ପ୍ରେମିକାଟିଏ ଯିଏ ପୁଣି ନିଜ ସ୍ଥିତିପୂର୍ବରୁ ରହିଥାଏ, ଏମିତି ଏକ ରୂପକଳ୍ପ ଯାହା ତାଂକ ଅନାହତ କାମନା ପାଇଁ ଉଦ୍ଦିଷ୍ଟ । ତାଂକ ପ୍ରେମିକା ଜଣେ ନିର୍ଜନ ନାରୀ ଯିଏ ପୃଥିବୀର ରହସ୍ୟ ଆଉ ଦେହର ଉଷ୍ମତା ଭିତରେ ସେତୁଟିଏ ।

‘ତୁମେ ପୁଣି ରାତିପରି
ନିର୍ଜନ ଓ ତାରକାଖଚିତ,
ତୁମେ ପୁଣି ତାରାପରି ନୀରବ ଓ
ସରଳ, ସୁଦୂର ।’

ସେ ସମୟର ପାରଂପାରିକ ଇଂରାଜୀ କବିତାରେ ସମୟ ଥିଲା ନଇରେ ବହୁଥିବା ପାଣିପରି, ପକ୍ଷୀର ହଲୁଥିବା ଡେଣାଟିଏ ପରି । ସଦା ପରିବର୍ତ୍ତନଶୀଳ । ମାତ୍ର ନେରୁଦାଂକ କବିତାରେ ସମୟର ପ୍ରତ୍ୟେକ ମୁହୂର୍ତ୍ତ ନୀରବ ଯନ୍ତ୍ରଣାରେ ପୃଥିବୀକୁ ଭରିଦିଏ । ସମୟ ଏଠି ଯନ୍ତ୍ରଣା ଦଗ୍‌ଧ, ଦୁଃଖଦ । ସମୟ ବଢୁଥାଏ ପରାଂଗପୁଷ୍ଟ ଲତାଟିଏ ପରି । ଜୀବନକୁ ପଳପଳ କରି ଶୋଷୁଥାଏ । ନିର୍ଜନରେ, ନିକାଂଚନରେ । ଏଣୁ ନେରୁଦାଂକ ପାଇଁ ସମୟ, ମୃତ୍ୟୁ ଓ ନିର୍ଜନତା ଭିତରେ ସେତୁଟିଏ ।

ରବୀନ୍ଦ୍ରନାଥ ଲେଖିଥିଲେ- ‘କାଲେର ଯାତ୍ରାର ଧ୍ୱୋନି ଶୁନିତେ କି ପାଓ’ (କାଳର ଯାତ୍ରାର ଧ୍ୱନି ଶୁଣିପାରୁଛକି ?) ନେରୁଦା ଲେଖିଛନ୍ତି ।

‘ମଣିଷମାନଂକ ଦଉଡ଼ରେ
ତମେ କଣ ଶୁଣି ପାରୁନାହଁ
ସବୁବେଳେ ଜିତୁଥିବା
ସମୟର ଶବ୍ଦ
ଯାହା ନିଆଁ ପରି ଆସ୍ତେ ଆସ୍ତେ କୁହୁଳୁଥାଏ
ନିଶ୍ଚିତ ଓ ଦୃଢ଼,
ଯାହାର ବଳ ବଢୁଥାଏ କ୍ରମାଗତ ଭାବେ ।’

ନେରୁଦାଂକ ଭାଷାରେ 'କବିତାଟିଏ ନିହାତି ନିଃସଂଗ ଏକ ମୃତ ପୃଥିବୀରେ । ତା' ଦେହରେ ବର୍ଷାବିଂନ୍ଦୁ ପଡ଼ିଲେ ସେ ଆହୁରି ନିଃସଂଗ ହୋଇଯାଏ ।' ଏଣୁ ତାଂକ କବିତା ଗୁଡ଼ିକରେ ବର୍ଷା ଆଉ ପାଣି, କୁହୁଡ଼ି ବ୍ୟତୀତ, ନିର୍ଜନତାର ପ୍ରତୀକ । ତାଂକ ପାଇଁ ବର୍ଷା ଜୀବନର ପ୍ରତୀକ ନୁହେଁ ବରଂ ମଣିଷର ଅସହାୟତା, ଦୁସ୍ଥିତିର ଛବି । ଏଇଥିପାଇଁ ବିଶିଷ୍ଟ ସମାଲୋଚକ ଏମିର୍ ରୋଡ୍ରିଗୁଜ୍ ମୋଜେଗାଲ କହନ୍ତି- 'ଏ ସବୁ କବିତା ଆମ ଦେଶର ଯୁବକମାନେ ପଢ଼ିବା ଉଚିତ ନୁହେଁ । ହତାଶାବୋଧ ଓ ଆଶଂକାରେ ଜୁଡୁବୁଡୁ ଏସବୁ କବିତା ବଂଚିବାର ସହାୟକ ନୁହେଁ, ବରଂ ମୃତ୍ୟୁ ପାଇଁ ପ୍ରେରଣାଦାୟକ ।'

'ଟ୍ୱେନ୍‌ଟି ଲଭ ପୋଏମସ୍'ର ଷୋଡଶ କବିତାପାଇଁ ସେ ଖୁବ୍ ସମାଲୋଚିତ ହୋଇଥିଲେ । କବିତାଟିର ନାଁ 'ମୋ ଗୋଧୂଳି ଆକାଶରେ' । ନେରୁଦାଂକ ସମାଲୋଚକ ପାବ୍ଲୋ ଡି ରୋଖା ଓ ଭିସେଣ୍ଟି ହୁଇଡୋବ୍ରୋ କହିଲେ ଯେ ଏହି କବିତାକୁ ସେ ଭାରତୀୟ କବି ରବୀନ୍ଦ୍ରନାଥ ଟାଗୋରଂକ ଗାର୍ଡନର୍‌ର ତ୍ରିଂଶତମ କବିତାରୁ ଚୋରି କରିଛନ୍ତି । ରବୀନ୍ଦ୍ରନାଥ ଲେଖିଥିଲେ-

'ତୁମେ ଗୋଧୂଳିର ମେଘ ଖଂଡେ
ମୋ ଆକାଶରେ, କଳ୍ପନାରେ
ତୁମ ରଂଗ ଓ ଗଢ଼ଣ, ସେହିପରି
ଯାହା ସବୁ ମୋତେ ଭଲଲାଗେ ।
ତୁମେ ମୋର, ତୁମେ ମୋର
ଆଉ ତୁମେ ରହିଥାଅ
ମୋ ଅସଂଖ୍ୟ ସ୍ୱପ୍ନରେ ।'

ନେରୁଦା ଲେଖିଛନ୍ତି-

'ତୁମେ ମେଘ ଖଂଡେ
ମୋ ଗୋଧୂଳି ଆକାଶରେ
ତୁମ ଦେହ ରଂଗ ଓ ଗଢ଼ଣ
ଠିକ୍ ସେଇଭଳି
ଯାହା ସବୁ ମୋତେ ଭଲ ଲାଗେ ।

ତୁମେ ମୋର, ତୁମେ ମୋର
ହେ ନାରୀ, ତୁମ ଓଠ ମିଠା ମିଠା
ଆଉ ମୋର ସୀମାହୀନ ସ୍ୱପ୍ନ
ବସାବାନ୍ଧି ରହିଥାଏ ତୁମରି ଜୀବନେ ।'

ଏହା ବ୍ୟତୀତ ଦୁଇ କବିତାରେ ବ୍ୟବହୃତ ଅନେକ ଶବ୍ଦ ଏକାଭଳି । ଏସବୁ ସମାଲୋଚନା ଫଳରେ ୧୯୩୭ ମସିହାରେ ପ୍ରକାଶିତ 'ଟ୍ୱେନ୍‌ଟି ଲଭ୍ ପୋଏମସ୍'ର ନୂତନ ସଂକଳନରେ ନେରୁଦା ଏହି କବିତା ତଳେ ଗୋଟିଏ ଟିପ୍ପଣୀ ଲେଖିଥିଲେ- ଏହି କବିତାଟି ରବୀନ୍ଦ୍ରନାଥ ଟାଗୋରଂକ ଗାର୍ଡେନର୍‌ର ତ୍ରିଂଶତମ କବିତାର ଭାବାନ୍ତର ।

ଏସବୁ ସତ୍ତ୍ୱେ ସମାଲୋଚକ ରବର୍ଟ ଫ୍ରିଗ୍-ମିଲ କହନ୍ତି- 'ଏଇ ସଂକଳନଟିରେ ଆମେ ଦୁଇପ୍ରକାର କାବ୍ୟିକ ଗଠନରୀତି ଦେଖୁ । ଏସବୁ କବିତା ଗୁଡ଼ିକର କାବ୍ୟିକ ଶକ୍ତି ଅତୁଳନୀୟ । କେବଳ ମହାନ୍ କବି ରୁବେନ୍ ଡାରିଓ ଥିଲେ ନେରୁଦାଂକ ଲୋକପ୍ରିୟତାର ସମସ୍ପର୍ଦ୍ଧୀ ।' ଏଣୁ ସମଗ୍ର ଚିଲ୍ଲୀରେ ନେରୁଦା ପାଲଟିଯାଇଥିଲେ ପ୍ରେମର ପ୍ରତୀକ । ତାଂକର ଧାଡ଼ିମାନ ଥିଲା ସବୁ ପ୍ରେମିକ ପ୍ରେମିକାଂକ ଚିଠିରେ, ଓଠରେ ।

ତାଂକର ସ୍ପେନ୍ ରହଣି ଭିତରେ ବହୁ ଜିନିଷ ବଦଳିବାକୁ ଲାଗିଲା । ଫ୍ରେଡ୍‌ରିକ୍ ଗାର୍ସିଆ ଲୋର୍କା, ରାଫେଲ ଆଲବର୍ଟୀ ହୋଇଗଲେ ତାଙ୍କର ପରମ ବଂଧୁ । ସେଇଠି ସାକ୍ଷାତ ହୋଇଥିଲା ଆର୍ଜେଣ୍ଟିନୀୟ ମହିଳା ଡେଲିଆ ଦେଲ୍ କାରିଲ୍‌ଂକ ସଂଗେ, ଯେକି ତାଂକଠାରୁ ବୟସରେ ପନ୍ଦର ବର୍ଷ ବଡ଼ ଥିଲେ । ପରବର୍ତ୍ତୀ କାଳରେ ସେ ହିଁ ହୋଇଥିଲେ ତାଂକର ଦ୍ୱିତୀୟ ପତ୍ନୀ । ସେ ହିଁ ଏକ ଅର୍ଥରେ ନେରୁଦାଂକ କବିତା ଓ ଦୃଷ୍ଟିଭଂଗୀକୁ ଗଭୀର ଭାବେ ପ୍ରଭାବିତ କରିଥିଲେ । ପେରୁର ମହାନ୍ କବି ଭାଲେଜୋଂକ ଭଳି ସେ ଅଙ୍ଗୀକାରବଦ୍ଧ ସାହିତ୍ୟର ପ୍ରବକ୍ତା ହୋଇଗଲେ ।

ନିର୍ବାସନରୁ ଫେରିବା ପରେ ନେରୁଦା ୧୯୫୨ ମସିହାରେ ପ୍ରକାଶ କରିଥିଲେ 'ଦି କାପ୍‌ଟେନ୍‌ସ୍ ଭରସେସ୍' ଏଗୁଡ଼ିକ ଥିଲା ପ୍ରେମ ସଂଗୀତ ପର୍ଯ୍ୟାୟର । ପ୍ରଥମେ ସଂକଳନଟି ଛଦ୍ମନାମରେ ପ୍ରକାଶିତ ହୋଇଥିଲା । ଏହା ପୂର୍ବରୁ ୧୯୪୬ ମସିହାରେ ତାଂକର ମାଟିଲ୍‌ଡେ ଉରୁସିଆଂକ ସହ ସାକ୍ଷାତ ହୋଇଥିଲା । ବହୁ ବର୍ଷ ପରେ ସେ

ଉରୁସିଆଂକୁ ତାଂକର ତୃତୀୟ ପତ୍ନୀ ଭାବେ ବିବାହ କରିଥିଲେ । ଏହି ସଂକଳନଟିର ବହୁ କବିତା ଉରୁସିଆଂକ ଉଦ୍ଦେଶ୍ୟରେ ଲିଖିତ । ଏଇଥିପାଇଁ ଥରେ ସେ କହିଥିଲେ 'ମୋତେ ସୁରା, ପ୍ରେମ, ଯନ୍ତ୍ରଣା ଓ ପୁସ୍ତକ ଭଲ ଲାଗେ । ନିଜର ନିର୍ଜନତା ପଇଁ ଏସବୁ ଗୋଟିଏ ଗୋଟିଏ ଆଶ୍ୱାସନା । ଯେକୌଣସି ଜିନିଷକୁ ବୁଝିବାକୁ ସବୁବେଳେ ସଂସ୍କୃତିର ସାହାଯ୍ୟ ନେବାକୁ ମୁଁ ଭଲ ପାଏନା । ମୁଁ ଦେଖେ ମୋ ଚାରିକଡ଼େ ଦୃଷ୍ଟିଭଂଗୀ, ଧାରଣା କମ୍, ଦେହ ବେଶୀ । ଝାଳ ଓ ସୂର୍ଯ୍ୟକିରଣ ଅଧିକ ।'

ଏହି ସଂକଳନ ଅଧିକାଂଶ କବିତାରେ ବ୍ୟାକୁଳତା, ଆବେଗ, ଉତ୍ତେଜନା ଅଧିକ ।

'ମୋ ହାତ କୁଳାଏ ନାହିଁ ବେଢ଼ିବାକୁ
ପ୍ରତିପଦ ଜହ୍ନପରି କଟୀକୁ ତୁମରି,
ଭଲପାଇବାରେ ତୁମେ
ସମୁଦ୍ରର ପାଣି ପରି ବହିଯାଅ
ମୁଁ କଳି ପାରେନା ଆକାଶର ଆଖି
ଝୁଂକିଆସେ ତମ ଓଠ ଉପରକୁ
ପୃଥିବୀରେ ଛାଇବାକୁ ଚେନାଏ ଚୁମ୍ବନ ।'
ଅଥବା-
'ତମେ ଆସ ଯେତେବେଳେ
ନଦୀସବୁ କୁଳୁକୁଳୁ ମୋ ଦେହ ଭିତରେ
ଆକାଶରେ ଘଣ୍ଟାସବୁ ବାଜିଉଠେ
ପ୍ରାର୍ଥନାରେ ପୂରଇ ପୃଥିବୀ,
କେବଳ ତୁମେ ଓ ମୁଁ
କେବଳ ତୁମେ ଓ ମୁଁ, ହେ ମୋ ପ୍ରିୟା
ଶୁଣୁଥାଉ ସେ ଘଣ୍ଟାଧ୍ୱନିକୁ ।'

'ଟ୍ୱେନ୍‌ଟୀ ଲଭ୍ ପୋଏମ୍‌ସ' ପରି ଶରୀର ବର୍ଣ୍ଣନା ନେରୁଦାଂକ ସବୁ ପ୍ରେମ କବିତାରେ ଖୁବ୍ ତୀକ୍ଷ୍ଣ ।

'ତୁମ ମୁହଁ ନଦେଖି ପାରିଲେ
ପାଦକୁ ମୁଁ ଚାହିଁ ରହିଥାଏ ।

ତୁମ ପାଦକୁ ମୁଁ ଭଲପାଏ
ଯେହେତୁ ଏଇ ପାଦ
କେତେ ରାସ୍ତା ଅତିକ୍ରମେ
ପାଣି, ପବନ ଓ ପୃଥିବୀ ଉପରେ
ଯେପର୍ଯ୍ୟନ୍ତ ମୋତେ ସିଏ ଭେଟି ନପାରିଛି ।'

ଅଥବା-

'ହେ ମୋ ଅସୁନ୍ଦରୀ, ସୁନ୍ଦରୀ
ପୃଥିବୀର ଯେତେ ସୁନା, ଯେତେ ରୂପା
ଯେତେ, ଶସ୍ୟ, ଯେତେ ପାଣି, ଯେତେ ଢେଉ
ତୁମ ଦେହ ଗଢ଼ା ତ ସେଥିରେ
ଯାହା ଗଢ଼ା ହୋଇଥାଏ
ମୋ ଚୁମ୍ବନ, ମୋ ବାହୁ
ଆଉ ମୋ ଆତ୍ମା ଉଦ୍ଦେଶ୍ୟରେ ।'

ନେରୁଦାଂକ ପ୍ରେମକବିତାର ବକ୍ତବ୍ୟ, ଭାଷା, ଶୈଳୀ ଟାଙ୍କ ରାଜନୈତିକ କବିତା ଠାରୁ ସଂପୂର୍ଣ୍ଣ ଭିନ୍ନ । ଅଧିକାଂଶ ପ୍ରେମ କବିତା ସରଳ ଓ ବୋଧଗମ୍ୟ । ଏ ସବୁଥିରେ ଆସକ୍ତି ଅଧିକ, ଆବେଗ ଅଧିକ ।

'ତୁମ କଟିଠାରୁ ପାଦଯାଏ
ମୁଁ ଆରମ୍ଭିବାକୁ ଚାହେଁ ଦୀର୍ଘ ଯାତ୍ରାଟିଏ'
(ପୋକ)

ଅଥବା-

'ମୁଁ ବାଘଟିଏ
ଛପି ରହିଥାଏ ପତ୍ର ଗହଳରେ
ତୁମେ ଆସ
ଯେତେବେଳେ ଧଳା ନଈଟିଏ
ବହିଆସେ କୁହୁଡ଼ି ଭିତରେ ।
ତା' ଭିତରେ ତୁବେ ତୁମ ମୁକୁଳା ଶରୀର
ମୁଁ ଅପେକ୍ଷା କରି ରହିଥାଏ ।

ତା' ପରେ ଗୋଟିଏ ଲମ୍ଫରେ
ନିଆଁ, ରକ୍ତ, ଦାନ୍ତ
ମେ ପଂଝା ଭିତରେ
ମୁଁ ବିଦୀର୍ଣ୍ଣ କରେ
ତମ ସ୍ତନ ଓ ଜଘନ ।'

(ବାଘ)

ଅଥବା-

'ସାରାରାତି ଶୋଇଥାଏ ତୁମ ସାଥେ
ସେ ଦ୍ୱୀପରେ, ଯାହା ଅଛି ସମୁଦ୍ର ଭିତରେ
ତୁମ ଦେହ ବଣ୍ୟ ଓ ମଧୁର
ତୁମ ଦେହ ଦୁଇପଟେ ନିଦ୍ରା ଓ ନିରୁକ୍ତି
ଅଗ୍ନି ଆଉ ଜଳ
ତୁମ ସାଥେ ଶୋଇଥିବା ବେଳେ ।
ଯେତେବେଳେ ମୁଁ ସ୍ୱପ୍ନରେ ଚାଲୁଥାଏ
ସେତେବେଳେ ତୁମ ଓଠ ଆସି
ମୋତେ ଦିଏ ମାଟି ଆଉ ସମୁଦ୍ରର ବାସ୍ନା
ତମର ଚୁମ୍ବନ ଲାଗେ ଓଦା ଓଦା ପାହାନ୍ତିଆ ବେଳେ
ମନେହୁଏ ସେ ଭିଜିଛି
ଆମ ଚାରିକଡ଼େ ଥିବା ସମୁଦ୍ର ପାଣିରେ ।'

(ସେଇ ଦ୍ୱୀପରେ ରାତିଟିଏ)

ନେରୁଦାଂକ ପାଇଁ ମୃତ୍ୟୁ ପ୍ରେମର ଅନ୍ତ ନୁହେଁ । ପ୍ରେମ ଏକ ଅଖଣ୍ଡ ଉପସ୍ଥିତି । ସବୁଆଡ଼େ ଦେହର ଉଷ୍ଣତା, ମନର ନିବିଡ଼ତା । ସାରାକାଳ ପାଖାପାଖି ରହିବାର ଅନୁଭବଟିଏ ।

'ମୋ ମୃତ୍ୟୁ ପରେ
ତୁମ ହସ ଆଉ ପାଦ ଟଳମଳ ନହେଉ
ମୋ ଖୁସିର ଐତିହ ମରିନଯାଉ ।
ମୋତେ ନା ଧରି ଡାକନା
ମୁଁ ତ ଉପସ୍ଥିତ ନାହିଁ ।

ମୋ ନଥିବା ବେଳେ ତୁମେ ରୁହ
ଯେମିତି ତୁମେ ଘର ଭିତରେ ଥାଅ ।
ନଥିବା ପଣର ଏଇ ବିରାଟ ଘର
ତା' କାନ୍ଥ ଦେଇ ତୁମେ ଚାଲି ଯାଇ ପାରିବ
ତା' ଭିତରେ ପବନରେ ତୁମେ ଚିତ୍ର ଟାଂଗି ପାରିବ ।
ନରହିବା ପୁଣି ଏମିତି ସ୍ୱଚ୍ଛ ଘରଟିଏ ଯେ
ମୁଁ ମୃତ, ତୁମେ ରହୁଥିବାର ଦେଖିପାରିବି
ଆଉ ତୁମର ଯଦି କଷ୍ଟହୁଏ, ପ୍ରିୟା
ମୁଁ ପୁଣିଥରେ ମରିପାରିବି ।'

ନେରୁଦାଂକ ଦୃଷ୍ଟିରେ ଦେହ ଗୌଣ ନୁହେଁ, ଆଦୌ । ପ୍ରେମରେ ଦେହ ସବୁକାଳେ ପ୍ରାସଂଗିକ । ସନେଟ୍‌ଗୁଡ଼ିକରେ ଏ କଥା ଆହୁରି ସ୍ପଷ୍ଟ ।

'ମୋତେ ଭଲଲାଗେ ଅଂଗର ମିଳନ
ମୋ କବିତା ରକ୍ତ ଆଉ ପ୍ରେମର ରଚନା
ଶୁଖିଲା ମାଟିରେ ମୁଁ ଗୋଲାପ ଫୁଟାଏ,
ନିଆଁ ଆଉ କାକର ଭିତରେ
ମୁଁ ଏମିତି ଗୀତ ଗାଉଥାଏ ।'

ଅଥବା-

'ଲୋକେ ତଥାପି ଶିହରି ଉଠୁଥିଲେ
ତୁମର ଦେହର ରେଖା
ଆଉ ସେଓ ପରି ତୁମ ବୁକୁ ଦେଖି,
ତୁମ ଓଠ ଏବେ ବି ମଧୁର
ଚୁମ୍ବନରେ ଏବେବି ସଜଳ
ତୁମ ବଣ୍ୟ ମୁହଁ ଆଉ ଆଖି ।'

ଅଥବା-

'ତୁମରି ପାଖରେ ସେ ସବୁ ମୁଁ ଛାଡ଼ି ଯାଉଅଛି
ଯାହା ମୁଁ ଆଉ ଯାହା ମୁଁ ନୁହେଁ
ମୋ ପାଖରେ ଯାହାନାହିଁ ଆଉ ଯାହା ସବୁ ଅଛି ।
ମୋ ପ୍ରେମ କାଂଦୁଥିବା ଶିଶୁଟିଏ ପରି
ଯାହା ତମବାହୁ ଛାଡ଼ିବାକୁ ରାଜିହୁଏ ନାହିଁ,

ତାକୁ ହିଁ ତୁମ ପାଖେ ଛାଡ଼ିଯାଉଅଛି
ତୁମେ ହିଁ ପ୍ରିୟତମା ମୋର
ଧାରାକାଳ ପାଇଁ ।'

ନେରୁଦାଂକ ପାଇଁ ନାରୀର ଦେହ ମୁଖ୍ୟ । ନାରୀର ଆଲିଂଗନ ଭିତରେ ଥାଏ ସବୁକିଛି : ବାଲି, ବର୍ଷା, ପ୍ରେମ ଓ ସମୟ ।

'ତୁମ ଆଲିଂଗନେ
ମୁଁ କୋଳାଏ ସେ ସବୁକୁ :
ସମୟକୁ ଓ ବାଲୁକାବନ୍ତକୁ
ବର୍ଷାର ବୃକ୍ଷକୁ
ଆଉ ସବୁ ଭଲପାଇବାକୁ
ସବୁକିଛି ଦେଖିପାରେ ଦୂରକୁ ନଯାଇ
ତୁମ ଦେହେ ସବୁ ଜୀବନକୁ ।'

ଅଥବା-

'ମୁଁ ଭୁଲିଲି ସେ ପ୍ରେମକୁ
ସେ ଛତାକୁ ଆଉ ଅନ୍ୟ ସବୁଜିନିଷକୁ
ମୁଁ ବଂଚିଲି ଭାବିଭାବି
ସେଇ ପ୍ରେମକଥା
ଆଉ ସେଇ ବସ୍ତୁ
ଯାହାର ନଥାଏ ଭାଗ୍ୟବୋଲି କିଛି...
ମୁଁ ଚାହେଁ ଦେଖିବାକୁ
ପାଉଛିକି ନାହିଁ ତାକୁ
ଯାହାକୁ ମୁଁ ହଜାଇ ଦେଇଛି
ଅବା ସିଏ ମୋ ପାଇଁ ଅପେକ୍ଷାରେ ଅଛି ।'

ପ୍ରତ୍ୟାଖ୍ୟାତ ହେଲା ପରେ ବି ନେରୁଦାଂକୁ ଲାଗେ ଯେମିତି ତାଙ୍କୁ କେହି ଅପେକ୍ଷା କରି ବସିଛି । ଏମିତି ଅସରନ୍ତି ଦେହଟିଏ ଯାହାଭିତରେ ଦୁଃଖ ଯନ୍ତ୍ରଣା, କମ୍ପନ ସ୍ୱପ୍ନ ସବୁ ବୁଡିଯାଏ ।

'ମୋତେ ଲାଗେ ପଡ଼ିଆ ଜମିପରି
ତୁମ ଦେହ ମେଲା ରହିଥାଏ
କୋଳାଇ ନେବାକୁ, ଯାହାସବୁ ମୁଁ ଦେଇ ପାରିବି

ସେ କଂପନ ଶିହରଣ
ବୁଡିଯାଏ ବୁଡିଯାଏ ତୁମ ଦେହେ
ଯେମିତି ସୂର୍ଯ୍ୟ ବୁଡେ ଗୋଧୂଳି ବେଳାରେ ।'

ସାରାଜୀବନ ଏକାଠି ରହିବାର ମୋହ, ଆସକ୍ତି ମୃତ୍ୟୁକୁ ବି ବିବଶ କରିଦିଏ । ଏଇଥିପାଇଁ ପ୍ରେମର ପୃଥିବୀରେ ମନ ଅପେକ୍ଷା ଦେହ, ମୃତ୍ୟୁ ଅପେକ୍ଷା ଜୀବନ ଅଧିକ ଗ୍ରହଣୀୟ, ଅଧିକ ସ୍ୱାଦ୍ୟ ।

'ଆମ ନିଜ ନିଜର ଡେଣା
ଲକ୍ଷହୀନ ଆଖି
ପହଞ୍ଚୁନଥିବା ପାଦ
ଦାଗ ହୋଇ ରହିଥିବା ଚୁମ୍ବନ
ପୁଣି ସବୁ ଫେରି ଆସିବ ।
ଏଥିରେ ଆମର ଲାଭ କଣ,
ଯେମିତି ପାଖାପାଖି ରହିଥିବା
ଦୁଇ କବରର ଘନିଷ୍ଠତା ?
ଜୀବନ ଅଲଗା ନକରୁ କେବେବି ଆମକୁ
କିଏ ବା ଖାତିର କରେ ଏମିତି ମୃତ୍ୟୁକୁ ?'

ଧୀରେ ଧୀରେ ନେରୁଦାଂକ ପ୍ରେମ ଦେହରୁ ଦେହାତୀତ ହୋଇଯାଏ । ମିଶିଯାଏ ମାଟିରେ, ପାହାଡ଼ରେ, ସମୁଦ୍ରରେ, ପକ୍ଷୀ ସଂଗୀତରେ ।

'ମୁଁ ତୁମକୁ ଛାଡ଼ିଦିଏ ଗମ୍ବୁଜ ଉପରେ
ଯାହା ଖାଲି ବରଫରେ ଭର୍ତ୍ତି
ମୁଁ ତୁମକୁ ଛାଡ଼ିଦିଏ
ଅଂଧାରର ଚଢ଼େଇ ବସାରେ ।
ତୁମେ ସେଠି ଏକାଂତରେ ରୁହ
ତୁମ ଦେହ ଭରିଯାଏ ଅସଂଖ୍ୟ ଡେଣାରେ
ଆଉ ତୁମେ ଉଡୁଥାଅ ଆକାଶରେ
ସ୍ଥିର ହୋଇ ପୃଥିବୀଠୁଁ ଅନେକ ଉପରେ ।'

ମାଟିରୁ ସମୁଦ୍ର, ସମୁଦ୍ରରୁ ପର୍ବତ, ପର୍ବତରୁ ଆକାଶ - ଜୀବନର, ପ୍ରେମର ଅନାହତ ଯାତ୍ରା । ଆକାଶରେ ଥାଏ ଅଂଧାର ଆଉବି ଥାଏ ତାରା । ଏଇ ଆକାଶର ଅଖଣ୍ଡ ଶୂନ୍ୟତା ଭିତରେ ପ୍ରେମିକ ପାଲଟିଯାଏ ଛାଇଟିଏ-

ନୀରବରେ, ନିର୍ଜନରେ । ଆଖିରେ ଅଂଧାର, ପାଦରେ ତୃଷାର ତାରା, ଦେହରେ ବସନ୍ତର ବାସ୍ନା- ନେରୁଦାଂକ ପ୍ରେମର ପରିଧି ଭିତରେ ତମସା, ତୃଷା, ତାରା ସବୁ ଏକାକାର ହୋଇଯାଏ ।

'ତମେ ଆସ ଚୁପ୍‌ଚାପ୍ ଘର ଭିତରକୁ
ଛାଇଟିଏ ଅଂଧାର ରାତିରେ
ତାରକିତ ପାଦ ଆଉ ବସନ୍ତ ଦେହରେ ।'

ଚାରିଆଡ଼େ ନୀଳନୀଳ ନିର୍ଜନତା । ନୀଳ ନିର୍ବାଣ, ନିରନ୍ତର- ନେରୁଦାଂକ କବିତାରେ, ପୃଥିବୀରେ ।
ଆକାଶରେ ବି ।



ଏ ଅନୁବାଦର ଆଢୁଆଳରେ ରହିଛି ବଂଧୁ ଅରବିଂଦ ବେହେରା, ପ୍ରଫୁଲ୍ଲ ବେହେରା, ଯତୀନ୍ଦ୍ର ନାୟକ, ଅରୁଣ ମହାନ୍ତି, ନରେନ୍ଦ୍ର ନାରାୟଣ ଦାଶଙ୍କ ଅମାପ ସଦିଚ୍ଛା । ପୁଣି ସମଗ୍ର ପାଂଡୁଲିପିକୁ ସଂଶୋଧନ କରିବାରେ ପାଇଛି କବି ଗିରିଜାକୁମାର ବଳୀୟାରସିଂହଙ୍କ ଅକୁଣ୍ଠ ସାହାଯ୍ୟ, ଅନାସକ୍ତ ଭାବେ । ପ୍ରଚ୍ଛଦ ଚିତ୍ର ପାଇଁ ବଂଧୁ ଓ ଗାଳ୍ପିକ ପ୍ରକାଶ ମହାପାତ୍ରଙ୍କ ନିକଟରେ ମୁଁ କୃତଜ୍ଞ । ସମାଲୋଚକ, ବଂଧୁ ବିଜୟାନନ୍ଦ ସିଂହଙ୍କ ସାହାଯ୍ୟ ଭୁଲିପାରିବି ନାହିଁ ।

ପୁଣି କୃତଜ୍ଞ ରହୁଛି ସେମାନଙ୍କ ପାଖରେ- ଆଗାମୀ ଦିନମାନଙ୍କରେ ଯେଉଁମାନେ ନେରୁଦାଂକୁ ପଢ଼ି ଆଉ ଥରେ ନିଆରା ଢଂଗରେ ଭଲପାଇବେ କବିତାକୁ, ଜୀବନକୁ ।

ସଂଗ୍ରାମ ଜେନା



# ରମଣୀର ତନୁ

ରମଣୀର ତନୁ
ଧବଳ ପର୍ବତମାନ, ଶୁଭ୍ର ଉରୁ,
ତୁମେ ଦିଶ
ଆତ୍ମସମର୍ପିତ ଏକ ଶାୟିତ ପୃଥିବୀ ।
ମୋ କଠିନ ଶରୀର
ତୁମକୁ ବିଦୀର୍ଣ୍ଣ କରେ
ପଦାକୁ ବାହାରି ଆସେ ଶିଶୁଟିଏ
ପୃଥିବୀର ଅତଳ ଗହ୍ୱରୁ ।

ମୁଁ ଥିଲି ନିର୍ଜନ ସୁଡ଼ଂଗଟେ ପରି
ମୋତେ ଛାଡ଼ି ପକ୍ଷୀସବୁ ଉଡ଼ିଗଲେ
ରାତି ମୋତେ କାବୁ କଲା
ଧ୍ୱଂସ କରିବାକୁ
ତା'ର ଉଗ୍ର ଆକ୍ରମଣେ
ନିଜକୁ ହିଁ ବଂଚାଇବା ପାଇଁ
ମୁଁ ତୁମକୁ ତିଆରିଲି ଅସ୍ତ୍ରଟିଏ କରି
ଯେମିତି ଧନୁରେ ମୋର ତୀରଟିଏ
ଅଥବା ପଥରଖଣ୍ଡେ ବାଟୁଲିଖଡ଼ାରେ ।

ପ୍ରତିହିଂସା ସମୟ ବିତିଛି
ଆଉ ମୁଁ ତୁମକୁ ଭାରି ଭଲପାଏ ଏବେ ।
ଚର୍ମର ଶରୀର, ଶିଉଳି ଓ ଉତ୍କଣ୍ଠାରେ ଗଢ଼ା
ଛାତିରେ ଘନ ଦୁଗ୍ଧର ପିଆଲା !
ଅନୁପସ୍ଥିତିର ଆଖି
ଗୁପ୍ତାଂଗର ଗୋଲାପ ଗୁଛ
ତୁମ ସ୍ୱର ଧୀର ଓ ବିଷଣ୍ଣ ।

ହେ ମୋ ରମଣୀର ତନୁ
ମୁଁ ଥିବି ଅବିରତ ତୁମ ଲାବଣ୍ୟରେ
ମୋ ତୃଷ୍ଣା ନେଇ, ଅସୀମ କାମନା ନେଇ
ମୋ ଘୁଂଚି ଘୁଂଚି ଯାଉଥିବା ପଥେ ।
ସେଇ ଅଂଧକାରମୟ ନଦୀଶଯ୍ୟା
ଯେଉଁଠାରେ ବହୁଥାଏ ଅନନ୍ତ ପିପାସା
ତା'ପଛରେ କ୍ଳାନ୍ତି ଆସେ ଆଉ ଆସେ ସୀମାହୀନ ବ୍ୟଥା ।



## ଆଲୋକ ତୁମକୁ ଢାଂକିଦିଏ

ଆଲୋକ ତୁମକୁ ଢାଂକିଦିଏ
ତା' ନଶ୍ୱର ଶିଖାରେ ।
ଠିଆହୋଇଅଛ ତୁମେ ମୁହଁଟି ଶୁଖାଇ
ଗୋଧୂଳିର ଆଦିମ ସେ ଘୂର୍ଣ୍ଣିଚକ୍ର ଆଗେ
ନିରନ୍ତର ଆବର୍ତ୍ତିତ ଯାହା
ତମ ଚାରିପଟେ ।

ବିବାକ୍ ବାନ୍ଧବ ମୋର
ମୃତ୍ୟୁର ଏଇ ନିର୍ଜ୍ଜନ ସନ୍ଧିରେ
ଏକା ଏକା ଠିଆ ହୋଇ
ତୁମେ ଆଲୋକର ପ୍ରାଣକଣିକାରେ ପୂର୍ଣ୍ଣ
ଯଥାର୍ଥ ଦାୟାଦ ତୁମେ ଧ୍ୱସ୍ତ ଦିବସର ।

ତୁମ କଳା ପୋଷାକ ଉପରେ
ସୂର୍ଯ୍ୟ ଅବା ଅଙ୍ଗାଡ଼େ ଝୁଡ଼ିଏ ଫଳ
ରାତିର ବିଶାଳ ଚେର
ହଠାତ୍ ବାହାରିଆସେ ତୁମର ଆତ୍ମାରୁ,
ଏବଂ ତୁମ ଛାତି ତଳେ ଚାପିହୋଇ ରହିଥିବା
ଚିଜମାନ, ଆଉଥରେ ବାହାରକୁ ବାହାରନ୍ତି,
ଯେଣୁ ତୁମ ନବଜାତ ନୀଳ ପାଂଶୁଳ ମଣିଷ
ଏ ସବୁକୁ ଖାଇ ବଂଚି ଥାଏ ।

ଓଃ ଚମତ୍କାର, ବୁଦ୍ଧିମାନ, ଆକର୍ଷକ କ୍ରୀତଦାସଗଣ
ପୁନରାୟ କୃଷ୍ଣ ଆଉ ସୁବର୍ଣ୍ଣ ବୃତ୍ତରେ
ଜାଗିଉଠ, ଆଗେ ବଢ଼
ଅଧୀନସ୍ଥ କର ଏ ସୃଷ୍ଟିକୁ, ନିଜ ନେତୃତ୍ୱରେ
ଯାହାର ଜୀବନ ଏତେ ସମୃଦ୍ଧ ଯେ
ଏହାର କୁସୁମ ସବୁ ଝରିପଡ଼େ
ଏବଂ ଏହା ଭରପୂର କେବଳ ଦୁଃଖରେ ।



# ଆଃ ଦେବଦାରୁର ବିସ୍ତାର

ଆଃ ଦେବଦାରୁର ବିସ୍ତାର
ଢେଉର ଗୁଣୁଗୁଣୁ ସ୍ୱନ ଭାଂଗିପଡ଼େ
ଅଳସ ଆଲୁଅ ଖେଳ, ନିଛାଟିଆ ଘଣ୍ଟାଧ୍ୱନି
ଖେଳନା କଣ୍ଢେଇ
ଗୋଧୂଳି ନଇଁଆସେ ତୁମରି ଆଖିରେ
ମାଟିର ଖେଳନା,
ଯା ଭିତରେ ପୃଥିବୀଟା ଗୀତ ଗାଉଥାଏ ।

ତୁମ ମଧ୍ୟେ ନଈମାନେ ଗୀତ ବୋଲୁଥାନ୍ତି
ଓ ମୋ ଆତ୍ମା ତା' ଭିତରେ ହଜିଯାଏ
ତୁମରି ଇଚ୍ଛାରେ
ଏବଂ ତୁମେ ବି ପଠାଇପାର ତାକୁ
ଯେଉଁ ଆଡ଼େ ତୁମେ ଇଚ୍ଛା କର ।

ମୁଁ ଲକ୍ଷ୍ୟସ୍ଥ
ତୁମ ଆଶା ଧନୁର ଦିଗରେ
ମୁଁ ମୋର ତୀରସବୁ ବିନ୍ଧିଦେବି
ଗଭୀର ଆବେଗେ ।

ମୁଁ ଦେଖେ ମୋ ଚାରିକଡ଼େ
ତୁମର କୁହୁଡ଼ି-କଟୀ
ଏବଂ ତୁମ ନୀରବତା ବିଦ୍ଧ କରେ
ମୋର ଯନ୍ତ୍ରଣାର ମୁହୂର୍ତ୍ତମାନଂକୁ ।
ମୋ ଚୁମ୍ବନ ଲାଗିରହେ
ଆଉ ମୋ ଆର୍ଦ୍ର କାମନାମାନ
ବସା ବାଂଧେ ତୁମରି ଭିତରେ
ତୁମ ସ୍ୱଚ୍ଛ ପଥରର ବାହୁବଂଧନରେ ।

ଆଃ ତୁମର ରହସ୍ୟମୟ କଣ୍ଠ
ଯା ଭିତରେ ପ୍ରଣୟର ଘଣ୍ଟାଧ୍ୱନି ଶୁଭେ
ଆଉ ଅଂଧାରର ପ୍ରତିଧ୍ୱନି ମୂର୍ଚ୍ଛିତ ସଂଧ୍ୟାରେ ।

ଏଣୁ ମୁଁ ଦେଖୁଛି ସେଇ ଗଭୀର ବେଳାରେ
ଆଉ ସେଇ ବିସ୍ତୀର୍ଣ୍ଣ କ୍ଷେତରେ
ପବନର ପାଟିରେ କିଭଳି
ଗହମ କେଣ୍ଡାର କାନ ଭର୍ତ୍ତି ହେଉଥାଏ ।



# ସକାଳଟି ପୂରିଥାଏ

ସକାଳଟି ପୂରିଥାଏ ଝଡ଼ରେ
ଗ୍ରୀଷ୍ମର ବୁକୁରେ ।

ମେଘସବୁ ଭାସୁଥାନ୍ତି
ବିଦାୟର ସଫେଦ୍ ରୁମାଲ ପରି
ପବନ ବହଇ ତାଙ୍କୁ ହାତରେ ହଲାଇ ।

ପବନର ଅସଂଖ୍ୟ ହୃଦୟ
ଆମ ପ୍ରିୟ ନିର୍ଜନତା ଦେହେ ଧକ୍କା ଖାଏ ।

ସ୍ୱର ଆଉ ଐଶ୍ୱରିକ
ତା' ପ୍ରତିଧ୍ୱନି ଶୁଭୁଥାଏ ଗଛ ଗହଳରେ
ଯୁଦ୍ଧ ଓ ସଂଗୀତଭରା ଭାଷାଟିଏ ପରି ।

ସେ ପବନ ଅଚାନକ ଚଢ଼ଉରେ
ଠେଲିଦିଏ ଶୁଖିଲା ପତ୍ରଂକୁ
ସେ ପୁଣି ବଦଳାଏ ଗତିପଥ
ପକ୍ଷୀଂକର ସ୍ପନ୍ଦିତ ତୀରର ।

ସେ ପବନ ତାକୁ ଓଲଟାଏ
ନ ଭିଜାଇ ଗୋଟିଏ ଢେଉରେ
ଭାରହୀନ ପଦାର୍ଥଟେ ଅବା ଶୀର୍ଣ୍ଣ ଅଗ୍ନିକଣା ପରି ।

ଚୁମ୍ବନର ଭୂଖଣ୍ଡଟି ତା'ର ଭାଂଗିଯାଏ, ବୁଡିଯାଏ
ପରାଜିତ ହେବା ପରେ
ଖରାଦିନ ବତାସର ଦରଜା ଦେହରେ ।



# ତେଣୁ ତୁମେ ମୋ କଥା ଶୁଣିବ

ତେଣୁ ତୁମେ ମୋ କଥା ଶୁଣିବ
ମୋ କଥା
ବେଳେବେଳେ କ୍ଷୀଣ ହୋଇଯାଏ
ସାମୁଦ୍ରିକ ସାରସ ପକ୍ଷୀର
ପାଦଚିହ୍ନ ପରି !
ବେଳାଭୂମିଟିରେ ।

ଗଳାର ହାର, ଆଉ ମାତାଲ ଘଣ୍ଟିଟିଏ
ଅଂଗୁର ଲତିକା ପରି ମୁଲାୟମ ତୁମ ହାତ ପାଇଁ ।

ଏଣୁ ମୁଁ ଦୂରରୁ ଶୁଣେ ମୋ କଥାକୁ
ସେମାନେ ମୋ ଠାରୁ ଅଧିକ ନିଜର ତୁମର
ମୋ ଆଦିମ ଯନ୍ତ୍ରଣା ଉପରେ
ସେମାନେ ଗୁଡ଼େଇ ହୋଇ ଯାଇଥାନ୍ତି
ଅଂଗୁର ଲତାଟିଏ ପରି ।

ଓଦାକାନ୍ଥ ଉପରକୁ ସେମିତି ସିଏ ମାଡ଼ିଗଲେ
ତମେତ ନିଜେହିଁ ଦୋଷୀ
ଏମିତି ନିଷ୍ଠୁର ଖେଳଟିଏ ପାଇଁ ।

ମୋ ଅଂଧାର ବୀଣାଠାରୁ
ସେମାନେ ବି ପଳାୟନ କରୁଥାନ୍ତି
ତୁମେ ସବୁ ପୂର୍ଣ୍ଣ କର
ତୁମେ ସବୁ ପୂର୍ଣ୍ଣ କରିଦିଅ ।

ତୁମ ଆଗୁ ସେମାନେ ବି ରହିଥିଲେ
ମୋ ନିର୍ଜ୍ଜନ ପଣରେ
ଏବେ ଯାହା ଅଧିକାର କରିଅଛ ତୁମେ,
ସେମାନେ ବି ମୋ ଦୁଃଖ ବୁଝନ୍ତି
ତୁମଠାରୁ ଅଧିକ ଭାବରେ ।

ଏବେ ମୁଁ ଚାହୁଁଛି
ସେମାନେ କହିବେ ସେଇକଥା
ଯାହାସବୁ ମୁଁ ତୁମକୁ କହିବାକୁ ଚାହେଁ ।
ଏବଂ ସବୁ କଥା ଠିକ୍ ସେହି ଭଳି
ଯେମିତି ମୋ ଠାରୁ ତୁମେ ଶୁଣିପାରିଥାନ୍ତ ।

ଯନ୍ତ୍ରଣାର ଝଡ଼ ସବୁଦିନ ପରି
ଭିଡ଼ିନିଏ ଏବେବି ସେମାନଂକ ଦେହ
ବେଳେବେଳେ ସ୍ୱପ୍ନର ବତାସ
ସେମାନଂକୁ ଠେଲି ତଳେ ଫିଙ୍ଗିଦିଏ ।

ମୋ କରୁଣ ସ୍ୱରଟି ଭିତରେ
ତୁମେ ଶୁଣ ଅନ୍ୟସବୁ ସ୍ୱର
ପ୍ରାଚୀନ କଣ୍ଠର ବିଳାପ
ବିନୟର ଆଦିମ ଶୋଣିତ ।

ହେ ସଂଗିନୀ ମୋର, ଭଲପାଅ ମୋତେ
ମୋତେ ଛାଡ଼ି ଯାଅ ନାହିଁ, ଆସ ମୋ ପଛରେ
ହେ ସଂଗିନୀ, ଆସ ମୋ ସଂଗତେ
ଯନ୍ତ୍ରଣାର ଏଇସବୁ ତରଂଗ ଉପରେ ।

ମୋ ଶବ୍ଦ ରଂଗୀନ ହୁଏ ତୁମରି ପ୍ରେମରେ
ତୁମେ ମୋର ସବୁ ନିଅ
ସବୁ ନେଇଯାଅ ।

ସେମାନଂକୁ ନେଇ
ମୁଁ ଗୁନ୍ଥିବି ସୀମାହୀନ ମାଳାଟିଏ
ତୁମ ଶୁଭ୍ର ହାତ ପାଇଁ
ଅଂଗୁର ପରି ଯାହା ମୁଲାୟମ ଲାଗେ ।



## ମନେପଡ଼ ମୋର, ପୂର୍ବେ ତୁମେ ଥିଲ କେଉଁପରି

ମନେପଡ଼ ମୋର
ଥିଲ ତୁମେ କେଉଁପରି ଗଲା ଶରତରେ
ତୁମେ ଥିଲ ଧୂସର ଗୋଲଟୋପି ପରି
ହୃଦୟ ତୁମର ଥିଲା ଶାନ୍ତ ଓ ନୀରବ ।
ଗୋଧୂଳିର ଶିଖାମାନେ ଯୁଝୁଥିଲେ ତୁମରି ଆଖିରେ
ଏବଂ ପତ୍ରମାନ କ୍ରମାଗତ ଝଡ଼ି ପଡୁଥିଲେ
ତୁମ ଆତ୍ମାଜଳେ ।

ମୋ ବାହୁକୁ ଭିଡ଼ିଧରି ଆରୋହୀ ଲତାଟି ପରି
ପତ୍ରରେ ସଂଚିତ ତୁମ କଣ୍ଠସ୍ୱର
ଶାନ୍ତ ଆଉ ଧୀର ।
ତୃଷ୍ଣା ମୋର ଜଳୁଥିଲା ବିସ୍ମିତ ଅଗ୍ନି ଉତ୍ସବରେ
ନୀଳ ନୀଳ ହ୍ୟାସିନ୍ଥ ଫୁଲର ବାସ୍ନା
ଖେଳୁଥିଲା ମୋ ଆତ୍ମା ଉପରେ ।

ମୁଁ ଜାଣେ ତୁମ ଆଖି ଘୁରୁଥାଏ
ଆଉ ଶରତର ଆଗମନ ଏବେବି ସୁଦୂର
ଧୂସର ଗୋଲଟୋପି, ପକ୍ଷୀର କାକଳି,
ଘର ପରି ମୋ ହୃଦୟ,

ଯେଉଁଆଡ଼େ ଉଡ଼ି ଉଡ଼ି ଯାଉଥାଏ
ମୋ କାମନା ବାସନା
ଓ ମୋ ଚୁମ୍ବନ ଆନନ୍ଦରେ ଝରିପଡ଼େ
ସୁଖମୟ ଶେଷଲଗ୍ନ ପରି ।
ଜାହାଜ ଉପରୁ ଆକାଶ, ପାହାଡ଼ ଉପରୁ ଦିଶୁଥିବା ମାଟି
ତୁମ ସ୍ମୃତିଗଢ଼ା ଆଲୁଅରେ, ଧୂଆଁରେ
ଓ ପୋଖରୀର ନିସ୍ତରଂଗ ଜଳେ ।

ତୁମ ଆଖି ସେପାରିର ଆହୁରି ଦୂରରେ
ସଂଜସବୁ ସମୁଜ୍ଜ୍ୱଳ
ଶରତର ଶୁଷ୍କ ପତ୍ରସବୁ
ଭ୍ରମୁଥିଲେ ଚତୁର୍ଦ୍ଦିଗେ ତୁମରି ଆତ୍ମାରେ ।



# ଅପରାହ୍ନ ଭିତରକୁ ଝୁଙ୍କିପଡ଼ି

ଅପରାହ୍ନ ଭିତରକୁ ଝୁଂକି ପଡ଼ି
ମୁଁ ଫିଙ୍ଗଇ ବିମର୍ଷ ମୋ ଜାଲ
ତୁମ ମହା ସମୁଦ୍ର ଆଖିକୁ ।

ସେଠି ଉଜ୍ଜ୍ୱଳତାର ଆଭା ଭିତରେ
ମୋ ନିର୍ଜନତା ଦୀର୍ଘତର ହୁଏ
ଆଉ ପ୍ରଜ୍ୱଳିତ ଅଗ୍ନିଶିଖା
ଡୁବିଯାଉଥିବା ଲୋକ ପରି
ତା'ର ଦୁଇ ହାତ ହଲାଉଥାଏ ।

ମୁଁ ଲାଲ ସଂକେତଟେ ପଠାଇଦେଇଛି
ତୁମର ଅନ୍ୟମନସ୍କ ଦୃଷ୍ଟି ଦିଗରେ
ଯାହା ବୁଲୁଥାଏ
ବତିଘର ପାଖ ସମୁଦ୍ରଟି ପରି ।

ତୁମେ ପାଶେ ରଖିଥାଅ କେବଳ ଅଂଧାର
ହେ ମୋ ସୁଦୂରା ନାରୀ,
ବେଳେବେଳେ ଜନ୍ମନିଏ
ଆତଂକର ଉପକୂଳଟିଏ
ତୁମ ଶ୍ରଦ୍ଧା, ସମ୍ମାନ ଭିତରୁ ।

ଅପରାହ୍ନ ଭିତରକୁ ଝୁଙ୍କିପଡ଼ି
ବିମର୍ଷ ମୋ ଜାଲଟିକୁ ଫିଙ୍ଗେ
ସେ ସମୁଦ୍ର ଭିତରକୁ
ଯେ ସମୁଦ୍ର ସନ୍ନିହିତ ତୁମରି ଆଖିରେ ।
ନିଶାଚର ପକ୍ଷୀମାନେ
ଯେଉଁପରି ଖୁମ୍ପୁଥାନ୍ତି ଆଦ୍ୟ ନକ୍ଷତ୍ରମାନଂକୁ
ଯାହାର ମିଂଜି ମିଂଜି ଆଲୋକ
ଠିକ୍ ମୋ ମନପରି,
ମୁଁ ତୁମକୁ ପ୍ରେମ କଲାବେଳେ ।

ରାତି ତା'ର ଛାୟାର ଘୋଟକୀ ଚଢ଼ି
ଡେଇଁ ଡେଇଁ ଯାଏ
ଆଉ ମାଟି ପରେ ଝଡ଼ିପଡ଼େ
ତା' ନିଜର ସୁନୀଳ କେଶର ।'



# ଧଳା ମହୁମାଛି

ଧଳା ମହୁମାଛି
ତୁ ଗୁଣୁଗୁଣୁ ଗୀତ ଗାଉ ମୋ ଆତ୍ମା ଭିତରେ
ମହୁ ପିଇ ମତୁଆଲା ହୋଇ,
ଆଉ ତୋ ଉଡ଼ିଯିବା
ଧୂଆଁର ଧୀର କୁଣ୍ଡଳୀଟେ ପରି ।

ମୁଁ ଏମିତି ଜଣେ ଯାର ଆଶା କିଛି ନାହିଁ
ମୁଁ ଏମିତି ଧ୍ୱନିଟିଏ, ପ୍ରତିଧ୍ୱନି ଯାହାର ନଥାଏ
ଏମିତି ଲୋକଟିଏ ଏକଦା ଯାହାର ଥିଲା ସବୁକିଛି
ଯିଏ ପୁଣି ସବୁଯାକ ହରାଇ ବସିଛି ।

ରଜ୍ଜୁର ଶେଷାଂଶ ହିଁ ତୁମେ
ତୁମ ଦେହେ ବାନ୍ଧି ହୋଇ ରହିଥାଏ ମୋ ଅନ୍ତିମ ଇଚ୍ଛା
ତୁମେଇ ତ ଶେଷ ଗୋଲାପଟେ
ମୋ ବନ୍ଧ୍ୟା ଭୂମିରେ ।

ଆଃ ତୁମେ ତଥାପି ନୀରବ !
ତୁମ ଭାରୀ ଆଖିରେ ପଲକ ପଡୁ
ରାତି ସେଠି ଡେଣା ହଲାଏ
ଆଃ ତୁମ ଦେହ,
ଢଳଗ୍ନ, ତ୍ରସ୍ତ ମୂର୍ତ୍ତିଟିଏ ।

ତୁମର ଗଭୀର ଆଖିରେ
ରାତି ନଇଁ ଆସେ
ଫୁଲ ପରି ତୁମ ଥଣ୍ଡା ବାହୁ
ଗୋଲାପ ପରି ତୁମ ସ୍ନିଗ୍ଧ କୋଳ ।

ତମ ସ୍ତନ ଶୁଭ୍ର ଶାମୁକାଟି ଭଳି
ଆଉ ଛାଇର ପ୍ରଜାପତିଟିଏ
ଶୋଇବାକୁ ଆସେ ତୁମ ପେଟ ଉପରକୁ ।

ହାୟ ତୁମେ ତଥାପି ନୀରବ !

ତୁମେ ନାହଁ ଏ ନିର୍ଜନ ସ୍ଥାନରେ
ଏବେ ଏଠି ବର୍ଷା
ସମୁଦ୍ରପବନ ତଡ଼ି ନିଏ
ଏକା ଏକା ଉଡୁଥିବା ସାଗର ପକ୍ଷୀଂକୁ ।

ଓଦା ରାସ୍ତାରେ ପାଣି ଖାଲିପାଦରେ ଚାଲିଚାଲି ଯାଏ
ଗଛ ଡାଳରୁ ପତ୍ରମାନଂକ ଅଭିଯୋଗ
ସେମାନେ ଅସୁସ୍ଥ ।

ଧଳା ମହୁମାଛି
ତୁମେ ଚାଲିଗଲା ପରେ
ମୋ ଆତ୍ମାରେ ତୁମର ଗୁଞ୍ଜନ
ତୁମେ ପୁଣି ବଂଚୁଥାଅ ସମୟ ଭିତରେ
କ୍ଷୀଣ ଓ ନିସ୍ତବ୍ଧ ।
ହାୟ ତୁମେ ତଥାପି ନୀରବ ।



## ଦେବଦାରୁପାନରେ ପ୍ରମତ୍ତ

ପ୍ରମତ୍ତ ମୁଁ
ଦେବଦାରୁପାନ ଆଉ ଦୀର୍ଘ ଚୁମ୍ବନରେ
ଯେଉଁପରି ଗୋଲାପଙ୍କୁ ନିଦାଘ ନିସ୍ତାରେ
କ୍ଷୀଣ, ଖର୍ବ ଦିନାନ୍ତରେ ଆକଣ୍ଠ ମୁଁ ସେ ସମୁଦ୍ରେ
ଯେ ସମୁଦ୍ର ଅବଲୁପ୍ତ ବହଳ ମୋ ସାଗରୀୟ ବାତୁଳପଣରେ ।

ମଳିନ, ଉଚ୍ଛନ୍ନ ସେ ମୋ ତୃଷିତ ଜଳରେ
ମୋ ଯାତ୍ରା ଉଲ୍ଲଙ୍ଗ ଆବହାଓ୍ୱା କଟୁ ଗନ୍ଧେ ଭରା
ତଥାପି ଧୂସର ଏବଂ କର୍କଶ ଶବ୍ଦରେ ଆବୃତ୍ତ
ପରିତ୍ୟକ୍ତ ତରଂଗର ମ୍ଳାନ ଫେଣମାନ ।

ଉନ୍ମତ୍ତ ମୁଁ ଢେଉ ଚଢ଼ି ବୁଲୁଥାଏ
ସେ ଢେଉ ଯାହା ଚନ୍ଦ୍ର, ସୂର୍ଯ୍ୟ, ତପ୍ତ ଓ ଶୀତଳ ।
ତତ୍‌କ୍ଷଣାତ୍ ଭାଗ୍ୟବନ୍ତ ଦ୍ୱୀପପୁଞ୍ଜେ ତୃପ୍ତ ହୋଇ ଶୋଇରହେ
ଯେଉଁ ଦ୍ୱୀପ ଶୁଭ୍ର ଓ ସୁମିଷ୍ଟ
ସୁଶୀତଳ ନିତମ୍ବଟେ ପରି ।

ଏ ଆତୁର ରାତିଟିରେ
ଚୁମ୍ବନର ପୋଷାକ ଶିହରେ,

ବାତୁଳ ମୁଁ ବିଦ୍ୟୁତ୍ ପ୍ରବାହେ
ମୁଁ ଡାଂଗଇ ଦୃଢ଼ଭାବେ ସ୍ୱପ୍ନଖଂଡ ହୋଇ
ଏବଂ ଉନ୍ମତ୍ତ ଗୋଲାପ ସବୁ ଭୋଗୁଥାଏ ମୋତେ ।

ନଦୀ ଉଜାଣିଆ
ତା' ଭିତରେ ବହିର୍ଗାମୀ ଢେଉଂକ ସଂଗରେ
ତୁମର ସମାନ୍ତରାଳ ଅବୟବ
ଲୋଟିପଡ଼େ ମୋ ବାହୁ ବଂଧନେ
ଯେଉଁପରି ମାଛଟିଏ ଚିରଦିନ ମୋ ଆତ୍ମାରେ ବଂଧା
ଦ୍ରୁତ ଆଉ ଧୀର
ଆକାଶର ତଳେ ସିଏ ଆସେ ମୋ ପାଖକୁ ।



# ଏପରିକି ହରାଇଛୁ ଆମେ

ହରାଇଛୁ ଆମେ
ଏପରିକି ଏଇ ଗୋଧୂଳିକୁ
କେହିତ ଦେଖିନି ଆମେ ଚାଲିବାର
ହାତ ଧରାଧରି ହୋଇ ଏଇ ସଂଜବେଳେ
ଯେତେବେଳେ ନୀଳରାତ୍ରୀ
ଝରିପଡ଼େ ପୃଥିବୀ ଉପରେ ।

ମୁଁ ଦେଖିଛି ମୋ ଝର୍କାରେ
ସୂର୍ଯ୍ୟାସ୍ତର ମହୋତ୍ସବ
ଦୂର କେଉଁ ପାହାଡ଼ ଚୂଳରେ ।

ବେଳେ ବେଳେ ଟୁକୁଡ଼ାଏ ସୂର୍ଯ୍ୟ
ଧାତୁର ମୁଦ୍ରାଟିଏ ପରି
ଜଳୁଥାଏ ମୋ ଦୁଇ ପାପୁଲି ଭିତରେ ।

ତୁମ କଥା ମନେପଡ଼େ
ଦୁଃଖରେ ଯେତେବେଳେ
ମୋ ଆତ୍ମା ନିବୁଜ ଥାଏ
ତମେ ତ ସେକଥା ଜାଣ ।

ସେତେବେଳେ ତୁମେ ଥିଲ ବା କେଉଁଠି ?
ଅବା ସେ ସମୟେ ତମେ ପାଖେ ଆଉ କିଏ ଥିଲା ?
କଣ ଅବା କହୁଥିଲା ?
କାହିଁକି ବା ଏତେ ଅନୁରାଗ
ଅକସ୍ମାତ ଚରିଆସେ ଉପରକୁ ମୋର
ଯେତେବେଳେ ମୁଁ ବ୍ୟଥିତ
ଏବଂ ଲାଗେ ତୁମେ ଅଛ ଅନେକ ଦୂରରେ ?

ଗୋଧୂଳି ଯା ପୃଷ୍ଠା ଓଲଟାଏ
ସେ ବହିଟି ମୋ ହାତରୁ ଖସିପଡ଼େ
ଆଉ ମୋ ଉତ୍ତରୀୟ ମୋ ପାଦତଳେ
ଲୋଟୁଥାଏ ଜଖମୀ ଶ୍ୱାନଟିଏ ପରି ।

ବରାବର ତୁମେ
ସଂଜ ହେଲେ ସେ ଯାଗାକୁ ଫେରିଆସ
ଯେଉଁଠାରେ ଗୋଧୂଳି ନିଭାଇ ଦିଏ
ମର୍ମର ମୂର୍ତ୍ତିଂକୁ ।



# ଆପାତତଃ ଆକାଶ ବାହାରେ

ଆପାତତଃ ଆକାଶ ବାହାରେ
ଅଧାଚନ୍ଦ୍ର ଠିଆ ହୋଇ ରହିଥାଏ
ସେଇ ଦୁଇ ପାହାଡ଼ ମଝିରେ,
ଘୂରିବୁଲେ ରାତି ସାଥେ
ଆଖି ତା'ର ଚାରିଦିଗ ଖୋଲି ଖୋଲି ଯାଏ
ଆମେ ଦେଖୁ କେତେ ତାରା
ଭାଂଗିରୁଜି ପଡ଼ିଛନ୍ତି ପୋଖରୀ ଭିତରେ ।

ମୋ ଦୁଇ ଆଖି ମଝିରେ ସେ
କାରୁଣ୍ୟର କ୍ରୁସଟିଏ ଗଢ଼େ
ଏବଂ ଧାଇଁ ଧାଇଁ ଦୂରକୁ ପଳାଏ ।
ନୀଳ ଧାତୁ ପରି ଦିଶୁଥିବା
ଶାନ୍ତ ଓ ସଂଗ୍ରାମର ରାତିସବୁ,
ମୋ ହୃଦୟ ଘୁରୁଥାଏ
ଉନ୍ମାଦ ଚକ୍ରଟିଏ ପରି ।

ଝିଅଟିଏ ଯେ ଆସିଛି ଅନେକ ଦୂରତା ଟପି
ଯେ ଆନୀତା ଅନେକ ଦୂରରୁ ।

ବେଳେବେଳେ ଆକାଶ ତଳେ
ବିଜୁଳି ପରି ତୁମେ ଚିକ୍‌ଚିକ୍ କର
ଘଡ଼ଘଡ଼ି, ବତାସ, କ୍ରୋଧର ଝଡ଼ ତୁମେ
ଅଟକି ନଯାଇ ତୁମେ
ମୋ ହୃଦୟ ଉପର ଦେଇ ପାରି ହୋଇଯାଅ ।
ଏ ପବନ ସାଉଁଟି ଆଣେ କବର ପାଖରୁ
ଭଂଗାରୁଜା ସବୁ ଜିନିଷକୁ
ପୁଣି ତାକୁ ପାରିଦିଏ
ତୁମର ପିଚ୍ଛିଳ ପଥେ
ଆଉ ଫିଗିଦିଏ ତୁମ ନିଦ୍ରିତ ଚେରକୁ ।

ତା' ଆରପଟେ ବିଷାଦ ବୃକ୍ଷରାଜି
ପଡ଼ିଥାଏ ମାଟିରୁ ଉପୁଡ଼ି ।
କିଂତୁ ତୁମେ ମେଘହୀନ କନ୍ୟା
ସନ୍ଦିଗ୍ଧ ଛାୟା
ଆଉ ଶସ୍ୟକେଣ୍ଡା ଭଳି ତୁମ ଜୁଡ଼ା ।
ତୁମେ ସେଇ ପରି
ଯେମିତି ଉଜ୍ଜ୍ୱଳ ପଦ୍ମମାନ ପବନ ଭିତରେ,
ତୁମେ ସେଇ
ପ୍ରଜ୍ୱଳିତ ଶ୍ୱେତପଦ୍ମ
ରାତିର ପାହାଡ଼ ପଛରେ
ଆହା, ମୁଁ କିଛି କହିପାରିବିନି !
ତୁମେ ଗଢ଼ା ସବୁଜିନିଷରେ ।
ଏ କାମନା, ମୋ ଛାତିକୁ ଚିରି ଖଣ୍ଡ ଖଣ୍ଡ କରିଦିଏ ।
ଏବେ ଆଉ ଏକ ପଥ ବାଛିନେବା ଭଲ
ଯେ ପଥରେ ତା' ହସ ନଥାଏ ।

ଝଡ଼, ଯାହା ଘଣ୍ଟିକୁ କବର ଦେଇଛି
କାଦୁଆ ପାଣିର ଭଉଁରି
ଏବେ ତାକୁ କାହିଁକି ଛୁଇଁବ
ଏବେ ତାକୁ କିଂପା ଦୁଃଖ ଦେବ ।

ବରଂ ଚାଲ ସେ ପଥରେ
ଯିଏ ନିଏ ତୁମକୁ
ସବୁ ଜିନିଷଠୁ ଅନେକ ଦୂରକୁ
ଯେ ପଥରେ ବ୍ୟଥା ନାହିଁ
ମୃତ୍ୟୁ ଆଉ ଶୀତ ଥାଏ ଅପେକ୍ଷାରେ
ଆଖି ଖୋଲି କାକର ବୁଂଦାରେ ।



# ତମ ବୁକୁ ହିଁ ଯଥେଷ୍ଟ

ତମ ବୁକୁ ହିଁ ଯଥେଷ୍ଟ ମୋ ହୃଦୟ ପାଇଁ
ଆଉ ମୋ ଡେଣାମାନ ତମ ମୁକ୍ତି ଲାଗି ।
ମୋ ପାଟିରୁ ବାହାରି ସେମାନେ
ଚାଲିବେ ସ୍ୱର୍ଗକୁ
ଯାହାସବୁ ଶୋଇଥିଲେ ତୁମ ଆତ୍ମାପରେ ।

ତୁମ ମଧ୍ୟେ ପ୍ରତ୍ୟାହିକ ମାୟା
କାକରବୁନ୍ଦାକ ପରି ତୁମେ ଆସ ଫୁଲପାଖୁଡ଼ାରେ
ତୁମେ ନାହିଁ ବୋଲି ଏ ଦିଗନ୍ତ ମହିମା ବିହୀନ
ସାରାକାଳ ତୁମେ ବହୁଥାଅ ପ୍ରବାହ ଯେପରି ।

ମୁଁ କହେ ତୁମେ ପବନରେ ଗୀତ ଗାଅ
ଦେବଦାରୁ ଅବା ଜାହାଜର ମାସ୍ତୁଲଟେ ପରି
ସେମାନଂକ ପରି ତୁମେ ଦୀର୍ଘ ଆଉ ଦୃଢ଼,
ପୁଣି ତୁମେ ଦୁଃଖୀ ହୁଅ
ଅକସ୍ମାତ୍ ଜଳଯାତ୍ରା ପରି ।

ପୁରୁଣା ରାସ୍ତାଟେ ପରି ତୁମେ ଠୁଳ କର
ଆବର୍ଜନା ତୁମରି ଉପରେ
ସହସ୍ରେକ ପ୍ରତିଧ୍ୱନି ତୁମ ଦେହେ
ଭିଜାସ୍ୱର ବିଗତ ସ୍ମୃତିର ।

ଯେତେବେଳେ ନିଦ ଭାଂଗେ ମୋର
ପକ୍ଷୀମାନେ ଉଡ଼ିଯାନ୍ତି ଅନେକ ଦୂରକୁ
ଯେଉଁମାନେ ଶୋଇଥିଲେ ତୁମ ମଧ୍ୟେ
ପରମ ଶାନ୍ତିରେ ।



## ଆଂକିଛି ମୁଁ ଅନେକ ନିଆଁର ଦାଗ

ତୁମ ଦେହ ଭୂଚିତ୍ରରେ
ଆଂକିଛି ମୁଁ ଅନେକ ନିଆଁର ଦାଗ
ମୋ ପାଟି ବୁଲୁଥିଲା
ବୁଢ଼ିଆଣୀଟି ପରି ଲୁଚିବାକୁ
ତୁମ ପାଖେ, ତୁମ ପଛେ
ଟିକେ ଲାଜୁଆ ଅଥଚ ଆତୁର ତୃଷ୍ଣାରେ ।

ଏଇ ସଂଧ୍ୟା କୂଳେ ବସି, ତୁମକୁ ମୁଁ ଗପ କହେ
ହେ ଦୁଃଖୀ, କଅଁଳ କଣ୍ଢେଇ ମୋର
ଯେମିତି ତମେ ଆଉ କଷ୍ଟ ପାଇବନି
ରାଜହଂସ, ତରୁଟିଏ, ଆଉ ଅନେକ ଦୂରରେ କିଛି-
ଯାହା ଏବେ ସୁଖୀ ।
ଇଏତ ଅଂଗୁରର ଋତୁ, ପାଚିବା, ଫଳିବାର ଋତୁ ।

ମୁଁ ଥିଲି ସେ ବଂଦରରେ
ଯେଉଁଠାରୁ ମୁଁ ତୁମକୁ ପାଉଥିଲି ଭଲ
ମୋ ନିର୍ଜନତା ଭାଂଗିପଡୁଥିଲା
ସ୍ୱପ୍ନ ଆଉ ମୌନତାରେ
ବାରିଧି ଓ ବେଦନା ମଧ୍ୟରେ ।

ମୌନ ପାଗଳଟେ ରହିଥାଏ
ଯେଉଁପରି ଦୁଇ ସ୍ଥିର ମାଝୀଂକ ମଝିରେ ।

କିଛି କଥା ମରିଯାଏ ଓଠ ଆଉ ସ୍ୱରଂକ ମଝିରେ
କିଛି କଥା ପକ୍ଷୀର ଡେଣାରେ
କିଛି ଯନ୍ତ୍ରଣା ଓ ବିସ୍ମୃତିର କାହାଣୀ ଭିତରେ ।
ଯେମିତି ଜାଲଟେ ଜମା
ଜଳବିଂନ୍ଦୁ ଧରିପାରେ ନାହିଁ
ହେ ମୋ ଖେଳନା କଣ୍ଢେଇ,
ତଥାପି କଂପୁଥାଏ ଅବଶିଷ୍ଟ ଜଳବିଂନ୍ଦୁ
ପଳାତକ ଶବ୍ଦଂକ ଭିତରେ
କିଏ ପୁଣି ଗୀତ ଗାଏ, ଯାହା ଉଠିଆସେ
ଭୋକିଲା ମୋ ପାଟି ଭିତରକୁ ।

ଖୁସିର ସବୁ ଶବ୍ଦ ନେଇ ତୁମେ ଖେଳିପାର
ଗାଇ, ଉଠି, ଉଡ଼ି
ପାଗଳ ହାତରେ ଘଣ୍ଟିଟିଏ ପରି ।
ହେ ମୋ ଦୁଃଖୀ, କୋମଳାଂଗୀ
ଅକସ୍ମାତ କିହେଲା ତୁମର ?
ଭୟଂକର ଶୀତଳ ଶିଖରେ ପହଞ୍ଚିବା ପରେ
ହୃଦୟ ମୋ ମୁଦି ହୋଇଯାଏ
ନିଶିପୁଷ୍ପ ପରି ।



# ପ୍ରତିଦିନ ଖେଳୁଥାଅ ତୁମେ

ପ୍ରତିଦିନ ଖେଳୁଥାଅ ତୁମେ
ଏ ବିଶ୍ୱର ଆଲୋକ ସହିତ ।
ହେ ନରମ ଅଭ୍ୟାଗତ
ଫୁଲରେ, ପାଣିରେ ତୁମେ
ଆସ ସହଜରେ ।
ତୁମେ ତ ତା'ଠୁ ବେଶୀ
ଯେଉଁ ଶୁଭ୍ର ଶିରକୁ
ମୁଁ ଚାପିଧରେ
ଫଳ ପେଣ୍ଠାପରି
ଦୁଇହାତ ପାପୁଲି ଭିତରେ ।

ତୁମ ତ ଅନନ୍ୟ
ଯେହେତୁ ତୁମକୁ ମୁଁ ପାଉଅଛି ଭଲ
ହଳଦିଆ ଫୁଲମାଳା ଗହଣରେ
ମୁଁ ତୁମକୁ ଚାହୁଁଥାଏ ବିଛାଇ ଦେବାକୁ ।
କିଏ ଲେଖିଦିଏ ତୁମ ନାଁ ଧୂଆଁ ଅକ୍ଷରରେ
ଦକ୍ଷିଣ ଦିଗରେ ଥିବା ତାରା ଗହଣରେ ?
ଓଃ ମତେ ଦିଅ ଭାବିବାକୁ
କେମିତି ବା ତୁମେ ଥିଲ ନଥିବା ଆଗରୁ ।

ହଠାତ୍ ପବନ ଚିତ୍କାର କରି ଧକ୍କା ଦିଏ
ମୋ ବଂଦ ଝର୍କାରେ
ଆକାଶଟା ଜାଲଟିଏ
ପୂରିଥାଏ ଧୂଆଁର ମାଛରେ ।
ନାନାଦି ପବନ ଧାରା
ଏଠି ସବୁ ବହୁଥାଏ
ଶୀଘ୍ର ଅବା ବିଳମ୍ବରେ ହେଉ
ବର୍ଷା ତାକୁ ବିବସନା କରେ ।

ପକ୍ଷୀସବୁ ଉଡ଼ିଯାନ୍ତି
ପବନ ବି, ପବନ ବି ।
ମୁଁ କେବଳ ଲଢ଼ିପାରେ
ଲୋକଂକର ଶକ୍ତି ବିରୋଧରେ ।
ତୋଫାନ୍ ଉଡ଼ାଇ ନିଏ ଅନ୍ଧାର ପତ୍ରଂକୁ
ଆଉ ମୁକୁଳାଏ ସବୁ ଜାହାଜକୁ
ଲଂଗର ପକାଇ ଯାହା ରହିଥିଲେ
ଗଲାକାଲି ରାତିର ଆକାଶେ ।

ତୁମେ ତ ରହିଛ ଏଠି
ତୁମେ କିନ୍ତୁ ପଳାଇ ଯାଅନା
ତୁମେ ତ ଉତ୍ତର ଦେବ ମୋ ଅନ୍ତିମ ବିଳାପର ।
ଭିଡ଼ିଧର ମୋତେ
ଯେମିତି କି ତ୍ରସ୍ତ ତୁମେ
ତଥାପି ବେଳେବେଳେ
ଅଜଣା ଛାଇଟିଏ
ଚାଲିଯାଏ ତୁମ ଆଖିଦେଇ ।

ଏବେ, ଏବେ ବି ସାନ ସାନ ପ୍ରେମିକ ମୋ'
ତୁମେ ମୋତେ ଦେଇ ଦିଅ ସୁବାସିତ ଲତାଟିଏ
ଏପରିକି ସେଇ ବାସ୍ନା ରହିଥାଏ ତୁମରି ବୁକୁରେ ।

ଯେତେବେଳେ ବିଷଣ୍ଣ ବତାସ
ହତ୍ୟା କରେ ପ୍ରଜାପତିସବୁ
ମୁଁ ତୁମକୁ ଭଲପାଏ
ଆଉ ମୋ ସୁଖ ଚୁମୁଥାଏ
ତୁମ ଓଠର ଫଳକୁ ।

ତୁମେ ନିଶ୍ଚେ ସହିଥିବ ଅନେକ ଯନ୍ତ୍ରଣା
ମୋ ସହିତ ଅଭ୍ୟସ୍ତ ହେବାକୁ ।
ମୋ ବଣ୍ୟ, ନିର୍ଜନ ଆତ୍ମା
ଯେମିତି ମୋ ନାଁ ଶୁଣି ସେମାନେ ସମସ୍ତେ
ଧାଇଁବାକୁ ଆରମ୍ଭ କରନ୍ତି ।

କେତେଥର ଆମେ ଦେଖିଛନ୍ତି
କୁଆଁତାରା ଜଳିଯାଏ
ଚୁମା ଦେଇ ଆମରି ଆଖିରେ
ଆଉ ଆମ ମଥା ପରେ
ଫିଟିପଡ଼େ ଧୂସର ଆଲୋକ
ଫଂଖାର ପବନରେ,
ମୋ କଥାସବୁ ବର୍ଷିଯାଏ
ତୁମକୁ ଆଘାତ କରି, ତୁମରି ଉପରେ ।

ବହୁ ଦିନୁ ପାଉଛି ମୁଁ ଭଲ
ତୁମ ରୌଦ୍ରଦଗ୍ଧ ଶୁଭ୍ର-ମୁକ୍ତା ଦେହ
ଏପରିକି ମୁଁ ମନେ ମନେ ଭାବେ
ତୁମେ ହିଁ ହେଉଛି କର୍ତ୍ତ୍ରୀ
ନିଖିଳ ଏ ବିଶ୍ୱ ବ୍ରହ୍ମାଣ୍ଡର ।
ସୁଖର ସେ ପର୍ବତ ଶିଖରୁ ମୁଁ ତୁମକୁ ଆଣିଦେବି
ଘଣ୍ଟି ପରି ନୀଳଫୁଲ, କଳାକଳା କୋଳି
ଓ ଝୁଡ଼ିଏ ଆଦିମ ଚୁମ୍ବନ ।
ମୁଁ କରିବି ତୁମ ସହ ତାହା
ଏ ବସନ୍ତ ଯାହା କରେ ଚେରୀଗଛ ତୁଳେ ।



## ମୁଁ ଚାହେଁ ହେବାକୁ ଶାନ୍ତ ତୁମ ପାଇଁ

ମୁଁ ଚାହେଁ ହେବାକୁ ଶାନ୍ତ ତୁମ ପାଇଁ
ଯେମିତିକି ତୁମେ ଏଠି ନାହଁ
ଆଉ ମୋତେ ଶୁଣୁଅଛ ଅନେକ ଦୂରରୁ
ଓ ମୋ ସ୍ୱର ତମକୁ ଛୁଇଁପାରେ ନାହିଁ ।
ମନେହୁଏ ତୁମ ଆଖି ଉଡ଼ିଯାଇଅଛି
ଅନେକ ଅନେକ ଦୂର
ଚୁମ୍ବନଟେ ରୋଧିଅଛି ତୁମ କଣ୍ଠସ୍ୱର ।

ଯେହେତୁ ସବୁରି ଭିତରେ ମୋ ଆତ୍ମା ଭରି ରହିଥାଏ
ଆଉ ତୁମେ ଆସ ସେସବୁ ଭିତରୁ
ମୋ ଆତ୍ମା ଭରିହୋଇ ରହିଥାଏ ତୁମରି ଭିତରେ ।
ତୁମେ ତ ମୋ ଆତ୍ମା ପରି
ସ୍ୱପ୍ନର ପ୍ରଜାପତିଟିଏ
ଏବଂ ତୁମେ ଲାଗ ।
ଶବ୍ଦ ଯାହା ବିଷାଦବାଚକ ।

ମୁଁ ଚାହେଁ ହେବାକୁ ଶାନ୍ତ ତୁମ ପାଇଁ
ସଂଭବତଃ ତୁମେ ଅଛ ଅନେକ ଦୂରରେ
ଶୁଭୁଥାଏ କାନ୍ଦୁଅଛ ତୁମେ ସେହିଭଳି
ପ୍ରଜାପତି ଯେମିତିକି ଶବ୍ଦ କରୁଅଛି
କପୋତ ସ୍ୱରରେ ।

ତୁମେ ମୋତେ ଶୁଣୁଅଛ ଅନେକ ଦୂରରୁ
ମୋ ସ୍ୱର ତୁମ ପାଖେ ପହଞ୍ଚି ପାରେନା
ମୋତେ ଦିଅ ଶାନ୍ତ ହୋଇ ରହିବାକୁ
ତୁମ ମୌନତାରେ ।

ମତେ ଦିଅ କଥା କହିବାକୁ
ତୁମ ନୀରବତା ସାଥେ
ଯାହା ଦୀପ ପରି ସମୁଜ୍ଜ୍ୱଳ
ଆଉ ମୁଦିଟିଏ ପରି ସାବଲୀଳ ।
ତୁମେ ତ ରାତିଟିଏ ନୀରବ ଓ ନକ୍ଷତ୍ରଖଚିତ
ତୁମ ନୀରବତା ନକ୍ଷତ୍ରଂକ ପରି
ସୁଦୂର ସୁସ୍ପଷ୍ଟ ।

ମୁଁ ଚାହେଁ ହେବାକୁ ଶାନ୍ତ ତୁମ ପାଇଁ
ଲାଗୁଥାଏ ତୁମେ ନାହଁ
ତୁମେ ସୁଦୂର ଓ ଶୋକଭରା
ଯେପରିକି ତୁମେ ଏବେ ପରଲୋକଗତା ।
ପଦେକଥା, ଟିକେ ହସ ଏହାହିଁ ଯଥେଷ୍ଟ ।
ଆଉ ମୁଁ ସୁଖୀ,
ଏ କଥା ତ ସତ ନୁହେଁ କେବେ ।



## ମୋ' ଗୋଧୂଳି ଆକାଶରେ

ତୁମେ ମେଘଖଂଡେ
ମୋ ଗୋଧୂଳି ଆକାଶରେ
ତୁମ ରଂଗ ଓ ଗଢ଼ଣ
ଠିକ୍ ସେହିଭଳି
ଯାହାସବୁ ମୋତେ ଭଲଲାଗେ ।
ତୁମେ ମୋର, ତୁମେ ମୋର, ହେ ନାରୀ
ତୁମ ଓଠ ମିଠା ମିଠା
ଆଉ ମୋର ସୀମାହୀନ ସ୍ୱପ୍ନ
ବସାବାଂଧି ରହିଥାଏ ତୁମରି ଜୀବନେ ।

ଆତ୍ମାର ଆଲୋକ ମୋର
ରଂଗ କରେ ତୁମ ଦୁଇପାଦ
ମୋ ଅମ୍ଳସୁରା ମିଠା ହୁଏ ତୁମରି ଓଠରେ
ହେ ମୋ ସଂଜ-ସଂଗୀତର ଅମଳକାରିଣୀ
ଏକାନ୍ତ ମୋ ସ୍ୱପ୍ନମାନେ
ଭାବୁଥାନ୍ତି କେଉଁପରି ତୁମେ ମୋର ବୋଲି !

ତୁମେ ମୋର ତୁମେ ମୋର
ଚିଲାଇ ମୁଁ କହିଦିଏ
ଏଇ କଥା ସଂଜ ପବନରେ
ଆଉ ସେ ପବନ ଘୂରିବୁଲେ
ମୋ ନିର୍ଜନ ବେସୁରା କଣ୍ଠରେ ।
ମୋ ଆଖି ଅଥଳତାର
ନିଷାଦିନୀ ତୁମେ,
ତୁମେ ଲୁଟିନିଅ ନିଥର ରାତିର
ଜଳପରି ନିସ୍ତରଂଗତାକୁ ।

ପ୍ରିୟା ମୋର, ତୁମେ ଧରାପଡ଼ିଯାଅ
ମୋ ଗୀତ ଜାଲରେ
ଏବଂ ମୋ ଗୀତର ଜାଲ
ବ୍ୟାପିଥାଏ ସାରା ଆକାଶରେ ।
ଆତ୍ମା ମୋର ଜନ୍ମନିଏ
ଶୋକାତୁର ତୁମ ଦୁଇ ଆଖିର ଉପାନ୍ତେ
ଆଉ ତୁମର ଏ ଶୋକାର୍ତ୍ତ ଆଖିରୁ
ସୃଷ୍ଟି ହୁଏ ସ୍ୱପ୍ନସ୍ଥଳଟିଏ ।



(ଏଇ କବିତାଟି ରବୀନ୍ଦ୍ରନାଥ ଟାଗୋରଂକ 'ଦି ଗାର୍ଡନର'ର ତ୍ରିଂଶତମ କବିତାର ଭାବାନ୍ତର)

# ଭାବୁଛି ଓଲଟ୍ ପାଲଟ୍ ଛାଇର କଥା

ଗଭୀର ନିର୍ଜନତା ଭିତରେ
ଓଲଟ ପାଲଟ ଛାଇ
ତୁମ କଥା ଭାବୁଛି କେବଳ ।
ତୁମେ ତ ବି ବହୁ ଦୂରେ
ସର୍ବାଧିକ ଦୂରତାରେ ପ୍ରତ୍ୟେକଙ୍କ ଠାରୁ
ତୁମ କଥା ଭାବୁଛି କେବଳ-ମୁକ୍ତ ପକ୍ଷୀ,
ହଜି ଯାଉଥିବା ଛବି, ନିଭିଯାଉଥିବା ଆଲୁଅ
ସବୁ ତୁମ କଥା ।
କୁହୁଡ଼ି ମୀନାର,
କେତେଦୂରେ, କେତେ ଉଚ୍ଚେ ଅଛ
ଉଦ୍‌ବେଳିତ ଶୋକ ପେଷିଦିଏ ଅସ୍ପଷ୍ଟ ଆଶାକୁ
ଏ ରାତି ପଡ଼ିଛି ଶୋଇ ମୁହଁମାଡ଼ି, ତୁମରି ଉପରେ
ସହରଠୁ ଅନେକ ଦୂରରେ ।

ତୁମର ଅସ୍ତିତ୍ୱ ମୋ' ପାଇଁ ଅଜ୍ଞାତ ସାମଗ୍ରୀ ପରି
ମୁଁ ଭାବେ ସାମ୍ନାରେ ତୁମ
ଜୀବନର ମହନୀୟ ଦିଗଟିଏ ମୋର
ଆବିଷ୍କାର କରି ମୁଁ ପାରିବି ।
ବାକି ସମସ୍ତଂକ ପାଇଁ
ମୋ ଜୀବନ କଠିନ, କର୍କଶ ।

ସମୁଦ୍ର ସାମ୍ନାର ଗର୍ଜନ
ପାହାଡ଼ରେ ପ୍ରତିଧ୍ୱନି ତୋଳି
ଦୂରକୁ ପଳାଏ
ପାଗଳଟେ ପରି ସମୁଦ୍ରର ଝଙ୍କଝଣିକାରେ
ବିଷଣ୍ଣ ରାଗିଣୀ, ଚିତ୍କାର ଓ ସମୁଦ୍ରର ନିର୍ଜନତା
ମସ୍ତକ ଉପର ଦେଇ ବଢ଼ାଏ ସେ ହାତ ଆକାଶ ଆଡ଼କୁ ।
ତୁମେ ନାରୀ, ସେଠି କଣ ତୁମେ ଥିଲ ?
ତୁମେ କଣ ଥିଲ ରଶ୍ମି ଅବା ବୃଥା ବତାସ ଭିତରେ ?
ତୁମେ ବି ତ ରହିଥିଲ ଅନେକ ଦୂରରେ
ଯେଉଁଠାରେ ଆଜି ବି ରହିଛ ।
ଅରଣ୍ୟର ଅଗ୍ନି ତୁମେ !
ନୀଳ ବହ୍ନିର କ୍ରୁଶ ।
ଜଳୁଥାଅ, ଜଳୁଥାଅ, ନଭଶ୍ଚୁମ୍ବୀ ଶିଖା ତୁମ
ଆଲୋକର ପାଦପ ମଧ୍ୟରେ
ଚକ୍‌ଚକ୍ ସ୍ଫୁଲିଙ୍ଗ
ଶବ୍ଦ କରି ତଳେ ଝରିପଡ଼େ
ନିଆଁ ଆଉ ନିଆଁ ।

ଆଉ ମୋ ଆତ୍ମା ନାଚି ନାଚି ଯାଏ
ଦଗ୍‌ଧ ହୋଇ ଅଗ୍ନିକୁଣ୍ଡଳୀରେ
କିଏ ଡାକେ ?
କେଉଁ ପ୍ରତିଧ୍ୱନିଭରା ନିର୍ଜନତା ?
ସ୍ମୃତିର ମୁହୂର୍ତ୍ତ, ଖୁସୀ କ୍ଷଣ, ନିକାଞ୍ଚନତାର ଲଗ୍ନ
ଏ ସବୁ ଭିତରେ ଥାଏ
ମୋ ନିଜର ଏକାନ୍ତ ସମୟ !
ଶିକାରୀର ଶିଂଗ
ଯା ଭିତର ପବନ ବହେ ଗୀତ ଗାଇଗାଇ ।

କାନ୍ଦଣାର ଏଇ ଆବେଗଟି
ମୋ ଦେହରେ ବାଂଧି ହୋଇ ରହିଥାଏ
ସବୁ ମୂଳ ଛିନ୍ନ କରି
ପାରିହୋଇ ଢେଉଂକର ଆକ୍ରମଣମାନ ।

ମୋ ଆତ୍ମା ଘୂରିବୁଲେ ଅବିରତ
ସୁଖୀ, ଦୁଃଖୀ ହୋଇ ।
ଭଛଇ ମୁଁ
ଏକାଂତରେ ପ୍ରଦୀପକୁ କବର ଦେବାକୁ
କିଏ ? ତୁମେ କିଏ ?



## ମୁଁ ତୁମକୁ ଭଲପାଏ ଏଠି

ମୁଁ ତୁମକୁ ଭଲପାଏ ଏଠି ।
ଅଂଧାରୁଆ ଦେବଦାରୁ ବଣେ
ପବନ ବି ହଜାଇ ଦିଏ ଆପଣାକୁ
ଝକ୍‌ମକ୍ କରେ ଜହ୍ନ ଗଂଧକଟେ ଭଳି
ପଳାୟନ କରୁଥିବା ଜଳରାଶି ପରେ,
ଦିନସବୁ ଏକାଭଳି ଏଠି
ଏକ ଧାଏଁ ଆରେକ ପଛରେ ।

ବରଫ ଝରୁଥାଏ ନାଚିବା ଭଂଗୀରେ
ରୂପାରଂଗ ଗଲ୍ ପକ୍ଷୀଟିଏ
ଖସିଆସେ ପଶ୍ଚିମ ଦିଗରୁ ।
ବେଳେବେଳେ ଦିଗନ୍ତରେ ଦୃଶ୍ୟ ହୁଏ
ନାବର ପାଲଟିଏ
ଆଉ ତାରାମାନେ ଅନେକ ଉଚ୍ଚରେ ।

ହେ ଜାହାଜର କଳାକ୍ରୁସ
ଏକାନ୍ତ ଏକାକୀ

ବେଳେବେଳେ ନିଦ ମୋର ଭାଂଗିଯାଏ ଭୋର୍‌ବେଳେ
ଦେଖେ ମୋର ଆତ୍ମା ଭିଜାଭିଜା
ବହୁଦୂରେ ସମୁଦ୍ରର ଧ୍ୱନି ପ୍ରତିଧ୍ୱନି
ଏଇ ତ ବଂଦରଟିଏ
ମୁଁ ତୁମକୁ ଭଲପାଏ ଏଠି ।

ମୁଁ ତୁମକୁ ଭଲପାଏ ଏଠି
ଆଉ ଦିଗ୍‌ବଳୟ ତୁମକୁ ଢାଙ୍କିବାକୁ ବୃଥା ଚେଷ୍ଟା କରେ,
ତଥାପି ମୁଁ ତୁମକୁ ଭଲପାଏ
ସବୁ ହେମାଳ ଜିନିଷ ଭିତରେ ।
ବେଳେବେଳେ ମୋ ଚୁମ୍ବନ
ଯାତ୍ରା କରେ ସେଇସବୁ ଭାରୀ ଜାହାଜରେ
ଯାହା ପାରିହୁଏ ସମୁଦ୍ରକୁ
ଅପହଞ୍ଚ ଲକ୍ଷ୍ୟ ଅଭିମୁଖେ ।

ମୁଁ ଭାବେ ମୁଁ ସେଇ ପୁରୁଣା ଲଂଗରଟିଏ
ଯେ ନିଜକୁ ଭୁଲିଯାଇଅଛି ।
ଯେତେବେଳେ ସଂଜ ଆସେ
ସେଠି ପୋତା ଖୁଣ୍ଟସବୁ ଦୁଃଖୀ ହୋଇଥାନ୍ତି
ମୋ ଜୀବନେ କ୍ଳାନ୍ତି ଆସେ, କ୍ଷୁଧା ଆସେ
ମୁଁ ଜାଣେନା କାହା ପାଇଁ ତାହା ।

ଭଲପାଏ ସେ ସବୁ ମୁଁ
ଯାହା ସବୁ ମୋ ପାଖେ ନଥାଏ ।
ତମେ ବି ତ ବହୁତ ଦୂରରେ ।

ମୋ ଚେଷ୍ଟା ଯୁଝୁଥାଏ
ଅଳସ ଗୋଧୂଳି ସହ
ରାତି କିନ୍ତୁ ନଇଁ ଆସେ, ଶୁଣାଇ ତା' ଗୀତ
ଇହ୍ନ ଆଣେ ସ୍ୱପ୍ନ ନିୟମିତ ।

ସବୁଠାରୁ ବଡ଼ତାରା
ମତେ ଦେଖେ ତୁମରି ଆଖିରେ
ମୁଁ ତୁମକୁ ଭଲପାଏ ଯେଣୁ
ବତାସରେ ବୋଲୁଥାନ୍ତି ତମ ନାଁ
ଦେବଦାରୁ ବୃକ୍ଷରାଜି
ସେମାନଙ୍କ ପତ୍ରଙ୍କର ତାରରେ ତାରରେ ।



# ରୌଦ୍ରଦଗ୍ଧା କୋମଳ କୁମାରୀ

ରୌଦ୍ରଦଗ୍ଧା କୋମଳ କୁମାରୀ
ଯେଉଁ ସୂର୍ଯ୍ୟ ସୃଷ୍ଟି କରେ ଫଳ
ଯିଏ କରେ ଶସ୍ୟରାଶି ପକ୍ୱ ଓ ପୃଥୁଳ
ସମୁଦ୍ର ଗୁଳ୍ମକୁ କରେ ଅଁକାବଁକା
ସିଏ ଭରିଦିଏ ତୁମ ଦେହେ ସୁଖ
ଉଜ୍ଜ୍ୱଳତା ତୁମରି ଆଖିରେ
ଆଉ ଜଳପରି ସାବଲୀଳ ସ୍ମିତ ।
ତୁମରି ମୁହଁରେ ।

ତୁମେ ଯେବେ ବାହୁବେନି ବିସ୍ତାରିତ କର
ଅଥୟ ସେ କୃଷ୍ଣ ସୂର୍ଯ୍ୟ
ବଁଧା ତୁମ କଜ୍ଜଳବେଣୀରେ
ତୁମେ ଖେଳ ସୂର୍ଯ୍ୟ ସାଥେ
ଯେମିତି ସେ ଛୋଟ ଝରଣାଟେ
ଆଉ ସିଏ ଛାଡ଼ିଯାଏ ଦୁଇଟି ଗଭୀର ଗଣ୍ଡ
ତୁମରି ଆଖିରେ ।

ହେ, ରୌଦ୍ରଦଗ୍ଧା, କୋମଳାଂଗୀ
ଆଉ କିଛି ଆକର୍ଷଣ କରେ ନାହିଁ ମୋତେ
ତୁମରି ପାଖକୁ
ଯେପରିକି ତୁମେ ହିଁ ମଧ୍ୟାହ୍ନ
ତୁମଠୁ ଦୂରେଇ ନିଏ ସବୁକିଛି ମୋତେ ।

ତୁମେ ମଧୁ ମକ୍ଷିକାର ଚଂଚଳ ଯୌବନ
ତରଂଗର ମତୁଆଲାପଣ
ଆଉ ଶ୍ରୁତିଶକ୍ତି ଗହମ-କାନର ।

ମୋ ଶାନ୍ତ ହୃଦୟ ଖୋଜେ ତଥାପି ତୁମକୁ
ମୁଁ ଭଲପାଏ
ତୁମ ସ୍ୱଚ୍ଛ ସୁଧୀର ସ୍ୱରକୁ
ତୁମର ଉଲ୍ଲାସମୟ ତମାମ୍ ଦେହକୁ ।
ହେ କୃଷ୍ଣ ପ୍ରଜାପତି
ତୁମେ ନିଶ୍ଚିତ, ମଧୁର
ଏ ଗହମ କ୍ଷେତ ଆଉ ସୂର୍ଯ୍ୟପରି,
ଜଳ ଆଉ ଅଫିମର ଫୁଲପରି ତୁମେ ।



# ଆଜିରାତି ରଚିପାରେଁ ଧାଡ଼ିମାନ ସବୁଠୁଁ ଦୁଃଖଦ

ଆଜି ରାତି ରଚିପାରେଁ ଧାଡ଼ିମାନ ସବୁଠୁଁ ଦୁଃଖଦ
ଯଥା 'ଏ ଯାମିନୀ ଆଜି ଜର୍ଜରିତ
ତାରାମାନେ ନୀଳ ଏବଂ ସୁଦୂରେ ସ୍ପଂଦିତ ।'
ଆକାଶ ଗୋଟାକ ଖେଦି
ରାତିର ପବନ ପୁଣି ଗାଉଥାଏ ଗୀତ ।
ଆଜି ରାତି ରଚିପାରେଁ ଧାଡ଼ିମାନ ସବୁଠୁଁ ଦୁଃଖଦ ।

ମୁଁ ତ ଭଲପାଉଥିଲି ତାକୁ
ସେ କେବେ କେମିତି ପୁଣି
ମତେ ମଧ୍ଯ ପାଉଥିଲା ଭଲ ।

ଆଜି ଏ ରାତି ଭଳି
ବହୁ ବହୁ ବିଗତ ରାତିରେ
ବାହୁରେ ଜଡ଼ାଇ ତାକୁ
ଘନଘନ ଚୁଂବୁଥିଲି ଅସଂରତି
ଏ ଆକାଶ ତଳେ ।

ସିଏ ମୋତେ ଭଲପାଉଥିଲା
ମୁଁ ବି ତାକୁ ବେଳେବେଳେ ପାଉଥିଲି ଭଲ
ଭଲ ମୁଁ ନ ପାଇଥାଂତି କୁହ ଭଲା
କେମିତି ଯେ ତାକୁ
ଆଉ ତା'ର ଡବଡବ ଆୟତ ଆକ୍ଷିକୁ !
ଆଜି ରାତି ରଚିପାରେଁ ଧାଡ଼ିମାନ ସବୁଠୁଁ ଦୁଃଖଦ ।

ମୋତେ ଲାଗେ ମୁଁ ଯେ ତାକୁ ହଜାଇ ଦେଇଚି
ଶୁଣିବାକୁ ଅସରଂତି ରାତି
ତା' ବିହୁନେ ସୀମାତୀତ ଯାହା
ଝରିପଡ଼େ ଗୀତସବୁ ମୋ ଆତ୍ମା ଉପରେ
ଯେମିତି କାକରବୁଂଦା ଚାରଣ ଭୂଇଁରେ ।

ଭାବି ଆଉ ଲାଭ କ'ଣ
ମୋ ପ୍ରେମ କାହିଁକି ତାକୁ ବାଂଧିପାରିଲାନି
ଆକାଶଟା ତାରାଭରା
ସେ କିଂତୁ ନେଇଚି ମୋଠୁ କେବଠୁଁ ମେଲାଣି !

ଏହା ହିଁ ତ ସବୁକିଛି
କେହି ଜଣେ ଗୀତଗାଏ
ଦୂରରେ ଓ ଅନେକ ଦୂରରେ
ଆତ୍ମା ମୋର ମାନେ ନାହିଁ
ତାକୁ କେବେ ହରାଇଛି ବୋଲି ।

ମୋ ଦୃଷ୍ଟି ଖୋଜୁଥାଏ ତାକୁ
ଦେଖିବାକୁ ଟିକେ ନିକଟରେ
ମୋ ହୃଦୟ ଖୋଜୁଥାଏ ତାକୁ
ଏବଂ ସେ ନାହିଁ ଆଉ ମୋ ପାଖରେ ।
ସେଇ ରାତି ତୁଷାରରେ ଶୁଭ୍ରକରେ
ସେ ବୃକ୍ଷମାନଙ୍କୁ
ଆମେ ମଧ୍ୟ ସେ ସମୟେ
ଆଗଭଳି ରହିତନଥାଉ ।
ମୁଁ ତ ଏବେ ତାକୁ ଆଉ କରୁନାହିଁ ପ୍ରେମ
ଏ କଥା ତ ସତ
କିନ୍ତୁ କେମିତି ବା ପାଉଥିଲି ଭଲ
ମୋ ସ୍ୱର ଚେଷ୍ଟାକରେ ଖୋଜିବାକୁ
ସେ ପବନ, ଯାହା ତାକୁ ଏକଥା କହିବ ।

ଅନ୍ୟର, ସେ ଅନ୍ୟ ଜଣକର
ସ୍ମିତିଟିଏ ଥିଲା ତା'ର ଯାହା
ମୋ ଚୁମ୍ବନ ପୂର୍ବ ଅବସ୍ଥାର
ତା' ସ୍ୱର ତା' ଶୁଭ୍ର ଶରୀର
ଏବଂ ଅସୀମତା ତା'ଦୁଇ ଆଖିର ।
ମୁଁ ପାଉନି ଭଲ ତାକୁ ଆଉ
ଏକଥା ନିଶ୍ଚିତ
କିନ୍ତୁ ଏହା ମଧ୍ୟ ହୋଇପାରେ ମୁଁ ପାଉଛି ଭଲ ।

ପ୍ରେମ ସିନା ପରିମିତ
କି ସୁଦୀର୍ଘ ବିସ୍ମୃତି ଅଥଚ ।

ଯେହେତୁ ଏମିତି ରାତି ମାନଂକରେ
ବେଢ଼ିଥିଲି ତାକୁ ମୁଁ ବାହୁରେ
ଆତ୍ମା ମୋର ମାନେନାହିଁ
ତାକୁ ପୁଣି ହରାଇଛି ବୋଲି ।

ଯଦିଚ ଏହାହିଁ ମୋର ହୁଏ ଶେଷକଷ୍ଟ
ତା'ପାଇଁ ଯାହା ମୁଁ ଭୋଗୁଛି
ଏଇ ମୋର ଶେଷ ପଦାବଳୀ
ତା'ପାଇଁ ଯାହା ମୁଁ ରଚୁଛି ।



## ଏକ ବିଷାଦ ଗୀତିକା

ମୋତେ ବେଢ଼ିରହିଥିବା ରାତି ଅଂଧାରରୁ
ଅବତରି ଆସୁଥିବା ସ୍ମୃତିଟିଏ ତୁମେ
ନଦୀଟିର ବିକଳ ବିଳାପ
ମିଶିଯାଏ ସମୁଦ୍ର ଜଳରେ ।

ପରିତ୍ୟକ୍ତ ଜେଟିପରି ସୂର୍ଯ୍ୟୋଦୟ ବେଳେ
ଏହାହିଁ ବିଦାୟ ବେଳା, ମୁଁ ଯେ ପରିତ୍ୟକ୍ତ !

ସୁଶୀତଳ ପୁଷ୍ପବୃଷ୍ଟି ହେଉଥାଏ ମୋ ହୃଦୟ ପରେ
ହେ ଆବର୍ଜନାମାନଂକର ଅତଳ ବିବର
ଭୟଂକର ଗୁହାଟିଏ ତୁମେ
ଦୁର୍ଘଟଣାଗ୍ରସ୍ତ ଜାହାଜର ।

ଯୁଦ୍ଧ ଆଉ ପଳାୟନ ପୁଂଜୀଭୂତ ତୁମରି ଦେହରେ
ତୁମ ଦେହେ ଜନ୍ମନିଏ
ଗାଉଥିବା ପକ୍ଷୀଡେଣାମାନ ।

ତୁମେ ଗିଳିଦେଲ ସବୁ-
ସୁଦୂରତା, ସମୁଦ୍ର ଓ ସମୟ ଯେପରି
ସବୁକିଛି ବୁଡ଼ିଗଲା ତୁମରି ଭିତରେ ।

ତାହା ଥିଲା ଦଂଶନ ଓ ଚୁମ୍ବନର ଖୁସୀକ୍ଷଣ
ସେ ମାଦକ ମୁହୂର୍ତ୍ତଟି
ଉଜ୍ଜ୍ୱଳିତ କରୁଥିଲା ବତିଘର ପରି ।
ଚାଳକର ଭୟ, ଅନ୍ଧ ବୁଡ଼ାଳିର କ୍ରୋଧ,
ମସ୍ତ ମାତଲାମି ଭଲପାଇବାର
ସବୁକିଛି ବୁଡ଼ିଗଲା ତୁମରି ଭିତରେ !

କୁହୁଡ଼ିର ଶୈଶବରେ
ଆହତ ମୋ ଆତ୍ମା ଯାହା ଡେଣା ମେଲିଥିଲା
ନିରୁଦ୍ଦିଷ୍ଟ ଆବିଷ୍କର୍ତ୍ତା
ସବୁକିଛି ବୁଡ଼ିଗଲା ତୁମରି ଭିତରେ !

ଦୁଃଖକୁତ ତୁମେ କଲ ଚନ୍ଦ୍ରହାର
କାମନାକୁ ଧରିଥିଲ ଛାତିରେ ଜାବୁଡ଼ି
ତମକୁ ବିମୁଗ୍ଧ କଲା ବିଷଣ୍ଣତା
ସବୁକିଛି ବୁଡ଼ିଗଲା ତୁମରି ଭିତରେ !

ମୁଁ ପିଠିକରି ଛାଇର କାନ୍ଥକୁ
କର୍ମ ଆଉ କାମନାର ସେପାରିରେ
ଚାଲୁଥିଲି ଆଗକୁ ଆଗକୁ ।

ଦେହ, ମୋ ନିଜ ଦେହ
ନାରୀଟିଏ ଯାହାକୁ ମୁଁ ପାଇଥିଲି ଭଲ
ଆଉ ଯାହାକୁ ମୁଁ ହଜାଇ ଦେଇଛି
ମୁଁ ତୁମକୁ ଡାକେ ଏଇ ଆର୍ଦ୍ର ମୁହୂର୍ତ୍ତରେ
ଗୀତ ପୁଣି ଗାଏ ତୁମପାଇଁ ।

ଅସୀମ କୋମଳପଣ
ସାଇତି ରଖିଛ ତୁମେ କାଚପାତ୍ର ପରି
ଅନନ୍ତ ବିସ୍ମୃତି ପୁଣି ତୁମକୁ ତ କଲା ଖଣ୍ଡ ଖଣ୍ଡ
କାଚପାତ୍ର ଭଳି ।
ସେଠି ଥିଲା ଦ୍ୱୀପଟିର କୃଷ୍ଣ ନିର୍ଜନତା
ହେ ମୋ ପ୍ରିୟା,
ତୁମ ବାହୁ ନେଇଗଲା ମୋତେ ସେ ସ୍ଥଳକୁ ।
ସେଠି ଥିଲା ଭୋକ, ଶୋଷ
ଆଉ ତୁମେ ଥିଲ ଫଳଟିଏ ପରି
ସେଠି ଥିଲା ଦୁଃଖ ଆଉ ଧ୍ୱଂସସ୍ତୂପ
ଏବଂ ତୁମେ ଥିଲ କୁହୁକ ସଦୃଶ ।

ହେ ନାରୀ, ମୁଁ ଜାଣେନା
କେମିତି ରଖିବ ଧରି ତୁମେ ମୋତେ
ତୁମରି ସେ ଆତ୍ମାର ଭୂମିରେ
ଅବା ତୁମ ବାହୁବଂଧନରେ !

ତୁମକୁ ପାଇବା ଇଚ୍ଛା ଥିଲା ମୋର
କି ତୀବ୍ର, କ୍ଷଣିକ !
କି ଦୁରୂହ, ନିଶାଗ୍ରସ୍ତ ବ୍ୟଗ୍ର ଓ ବ୍ୟାକୁଳ ।

ଚୁମ୍ବାର କବରମାନ
ତଥାପି ସ୍ଫୁଲିଙ୍ଗ ଥାଏ ତୁମରି ଗମ୍ବୁଜେ
ଏବେବି ତ ଫଳଭର୍ତ୍ତି ଶାଖାସବୁ ଜଳୁଥାନ୍ତି
ଚଢ଼େଇଂକ ଚଂଚୁ ଚୁମ୍ବନରେ ।

ତୁମର ଦଂଶିତ ମୁହଁ, ଚୁମ୍ବିତ ପ୍ରତ୍ୟଂଗ
କ୍ଷୁଧିତ ଦଶନ, ଯୁଗନଦ୍ଧ ସମଗ୍ର ଶରୀର ।

ଆଶା ଆଉ ଆୟାସର ଉନ୍ମତ୍ତ ରମଣ
ଯା ମଧ୍ୟରେ ଆମେ ତ ବିଲୀନ
ଏବଂ ଆମେ ବିଡ଼ମ୍ବିତ ମଧ୍ୟ ।
ତୁମ କୋମଳତା ଯାହା ପାଣି ଆଉ ଅଟା ଭଳି ହାଲ୍କା
ଶବ୍ଦ ସବୁ କଦାଚିତ୍ ଆସୁଥିଲା ଓଠ ଉପରକୁ ।

ଏହାହିଁ ଥିଲା ମୋ ଭାଗ୍ୟ
ଏହା ମଧ୍ୟେ ଜଳଯାତ୍ରା କରୁଥିଲେ ମୋ କାମନାମାନେ
ମୋ କାମନାମାନେ ସବୁ ତଳେ ପଡ଼ିଗଲେ
ସବୁକିଛି ବୁଡ଼ିଗଲା ତୁମରି ଭିତରେ ।

ହେ ଆବର୍ଜନାମାନଙ୍କର ଅତଳ ବିବର
ସବୁକିଛି ପଡ଼ିଗଲା ତୁମରି ଭିତରେ ।
କେତେ କେତେ ଦୁଃଖକଥା ତୁମେ ନକହିଛ
କେତେ କେତେ ଢେଉ ତଳେ ପୁଣି ତୁମେ ବୁଡ଼ି ନଗହିଛ ।

ଢେଉ ପରେ ଢେଉ
ତଦୁପରେ ତୁମେ ଡାକ
ଆଉ ଗୀତ ଗାଅ
ନାବର ମଂଗରେ ଠିଆ
ନାବିକଟେ ପରି ।
ତଥାପି ତ ସଂଗୀତରେ
ପ୍ରସ୍ଫୁଟିତ ତମେ
ବିରାଜିତ ସ୍ରୋତରେ ସ୍ରୋତରେ
ଭଂଗାରୁଜା ଆବର୍ଜନା ଫିଂଗିବାର
ଗାତ୍ଟିଏ ତୁମେ
ତୁମେ ମୁକ୍ତ, ତିକ୍ତ କୂପଟିଏ ।

ଅଂଧ ଓ ବିମର୍ଷ ବୁଡ଼ାଳି,
ହତଭାଗ୍ୟ ଧନୁର୍ଦ୍ଧର
ନିରୁଦ୍ଦିଷ୍ଟ ଆବିଷ୍କର୍ତ୍ତା
ସମସ୍ତେ ଡୁବିଗଲେ ତୁମରି ଭିତରେ ।

ଏଇ ତ ବିଦାୟବେଳା
ତୀବ୍ର ଆଉ ଶୀତଳ ମୁହୂର୍ତ୍ତ
ରାତି ଯାହା ବାଂଧିଦିଏ
ଏସବୁକୁ ସମୟ ସୂଚୀରେ ।

ଚନ୍ଦ୍ରହାର, ସମୁଦ୍ର ମର୍ମର ଧ୍ୱନିର
ଯାହା ପିନ୍ଧିଥାଏ କୂଳ
ଶୀତଳ ନକ୍ଷତ୍ର ସବୁ ଉପରକୁ ଉଠୁଥାଏ
କୃଷ୍ଣବର୍ଣ୍ଣ ପକ୍ଷୀମାନେ ଉଡ଼ିଯାନ୍ତି
ଦୂରେ ବହୁଦୂରେ
ପରିତ୍ୟକ୍ତ ଯେଟି ପରି, ସୂର୍ଯ୍ୟୋଦୟବେଳେ
କେବଳ ଥରଥର ଛାଇଟିଏ
ଘୂରୁଥାଏ ମୋ ହାତ ଭିତରେ ।

ତୁମେ ଅଛ ଅନେକ ଦୂରରେ
ତୁମେ ଅଛ ସବୁରି ଉର୍ଦ୍ଧ୍ୱରେ ।

ଏହା ହିଁ ବିଦାୟର ବେଳା
ପରିତ୍ୟକ୍ତ ପ୍ରଣୟକାଂକ୍ଷୀର ।

●



**କାବ୍ୟକୃତି**

ବସାଘର

ଦେହଦୋହା

**ଅନୁଦିତ ପୁସ୍ତକ**

ନଟୀ

କମଳାଦାସଙ୍କ କଥା: କବିତା

ଭ୍ୟାନଗଖ୍‌ଙ୍କ ଚିଠି ଓ ଚିତ୍ର

**ସମ୍ପାଦିତ ପୁସ୍ତକ**

ପୂର୍ବାଶାର ପାଣ୍ଡୁଲିପି

ପୀତନଦୀର ପାଦଟୀକା

ପ୍ରତିବେଶିନୀ

ଅନେକ ଆକାଶ

ନୀଳ ତାରାର ତୃଷ୍ଣା

ଅନୁବାଦ: ସଂଗ୍ରାମ ଜେନା



ମୁଁ ତ ଭଲ ପାଉଥିଲି ତାଙ୍କୁ
ସେ କେବେ କେମିତି ପୁଣି
ମତେ ମଧ୍ୟ ପାଉଥିଲା ଭଲ ।

ଆଜିର ଏ ରାତି ଭଳି
ବହୁ ବହୁ ବିଗତ ରାତିରେ
ବାହୁରେ ବେଢ଼ାଇ ତାଙ୍କୁ
ଘନଘନ ଚୁଂବୁଥିଲି ଅସରଂତି
ଏ ଆକାଶ ତଳେ ।

ପ୍ରେମ ସିନା ପରିମିତ
କି ସୁଦୀର୍ଘ ବିସ୍ମୃତି ଅଥଚ !
ଆଜି ରାତି ରଚିପାରେଁ
ଧାଡ଼ିମାନ ସବୁଠୁଁ ଦୁଃଖଦ ।